# ପୃଥିବୀର ଲୋକକଥା

( ପଞ୍ଜାବ )

[ ଚତୁର୍ଥ ଭାଗ ]

ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି. ଏସ୍. ସି., ଏଲ୍. ଏଲ୍. ବି.
ଓ. ଏସ୍. ଜେ. ଏସ୍. (ଅବସର)

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍. ଏ., ବି. ଇଡ

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

# PRUTHIBIR LOKAKATHA

( Punjab Lokakatha )

Fourth Part

# ପୃଥିବୀର ଲୋକକଥା

( ପଞ୍ଜାବ ଲୋକକଥା )

ଚତୁର୍ଥ ଭାଗ



ପ୍ରକାଶକ :

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**

ଦଧାଳ, ପୋଃ ଦଧାଳ, ପୁରୀ

ପ୍ରଥମ ସଂସ୍କରଣ—ଦଶହରା, ୧୯୮୭
ଦ୍ୱିତୀୟ ପ୍ରକାଶ—୧, ଡିସେମ୍ବର, ୧୯୯୦
ପରିବର୍ଦ୍ଧିତ ତୃତୀୟ ସଂସ୍କରଣ—ମହାଷ୍ଟମୀ, ୨୦୦୩

ପ୍ରଚ୍ଛଦପଟ—**ଶ୍ରୀ ରବିନାରାୟଣ ନାୟକ**

ମୁଦ୍ରଣ : **ଜେ.ବି.ଏସ. ପ୍ରିଣ୍ଟର୍ସ**
ଡଗରପଡ଼ା, କଟକ-୨

**ମୂଲ୍ୟ—୧୨ ଟଙ୍କା**

# ନିବେଦନ

ଏ ଜାତି ଆଜି ଦୁର୍ଦ୍ଦିନର ସମ୍ମୁଖୀନ । ଏହାର ଐତିହ୍ୟ ସଂସ୍କୃତି ସ୍ମରଣାତୀତ । ଯାହା କିଛି ଅଛି, ସେ ଅନ୍ଧ ବିଶ୍ୱାସରେ ପରିଧି ଭିତରେ ଘାଣ୍ଟି ହେଉଛି । ସବୁ ଜାତି ତାର ଅଭିଜ୍ଞତା ଆଧାର କରି ଉପରକୁ ଉଠେ । ଆମେ କ'ଣ ବ୍ୟତିକ୍ରମ ?

ପଞ୍ଜାବ ଭାରତର ଦ୍ୱାର ଦେଶରେ । ଯେ ଏ ଦେଶକୁ ଆକ୍ରମଣ କରିବାକୁ ଆସିଛି, ପଞ୍ଜାବୀମାନେ ତାର ମୁକାବିଲା କରିଛନ୍ତି । ସେମାନଙ୍କ ଆକ୍ରମଣକୁ ପ୍ରତିହତ କରି ପଞ୍ଜାବୀମାନେ ବଞ୍ଚିଛନ୍ତି । ସେମାନଙ୍କ ଅଭିଜ୍ଞତା ପ୍ରଚୁର । ସେମାନଙ୍କର କଳ୍ପନା ଅଭିଜ୍ଞତା, ସାହସିକତା ଉପରେ ପର୍ଯ୍ୟବେସିତ । ପଞ୍ଜାବ ଲୋକକଥା ଏହାର ପ୍ରତିବିମ୍ବ ।

ଓଡ଼ିଶାର ପାଠକ-ପାଠିକା ଏସବୁ ଗଳ୍ପ ପଢ଼ିଲେ, ଏହାର ଗୂଢ଼ ତଥ୍ୟ ଉପଲବ୍ଧି କରିପାରିବେ ।

ଲକ୍ଷ୍ମୀଧର ମହାନ୍ତି

卐

# ସୂଚୀପତ୍ର





# ଶ୍ରୀଯୁକ୍ତ ଗୁଣ୍ଡାଜୀ

ବହୁଦିନ ତଳର କଥା ।

ସୈନିକଟିଏ ଥିଲା । ନାଁ ତା'ର ଉଜାଗର ସିଂ । ତା'ର ସ୍ତ୍ରୀ ନୟନତାରା । ଉଦ୍ଧାମ ତାର ପୁଅ । ସେମାନେ ଖୁବ୍ ଗରିବ । ଉଜାଗରର ରୋଜଗାର ତାଙ୍କର ଏକମାତ୍ର ସମ୍ବଳ । ସେଇଥିରେ ସେମାନେ ଚଳନ୍ତି ।

ହଠାତ୍ ଉଜାଗର ମରିଗଲା । ରୋଜଗାର ବାଟ ବନ୍ଦ । ସେମାନଙ୍କର ଅନ୍ୟ କିଛି ଆୟର ପନ୍ଥା ନ ଥିଲା । ତେଣୁ ତାଙ୍କର ଅବସ୍ଥା ଅସମ୍ଭାଳ ହୋଇ ଉଠିଲା । ବେଳେବେଳେ ସେମାନେ ଖାଡ଼ା ଖାଡ଼ା ଉପାସ ରହିଯାନ୍ତି ।

ପୁଅଟି ଉପାସ ରହି ପାରୁନାହିଁ । ତାକୁ ଭାରି ବାଧୁଛି । ଦିନେ ସେ ତା ମାଆକୁ କହିଲା—"ମୋତେ ଗୁରିଟା ଟଙ୍କା ଦେ । ମୁଁ ବିଦେଶ ଯାଏ । ଭାଗ୍ୟ ପରୀକ୍ଷା କରେ । ନଚେତ୍ ଏଠି ଉପାସ ରହିରହି ମରିଯିବି ।"

ପୁଅଟି କଥାରେ ମା ଆଖିରେ ଲୁହ ! କଣ୍ଠ ତାର ବାଷ୍ପରୁଦ୍ଧ । ସେ କହିଲା—"ବାନ୍ଧ ବାଡ଼େଇଲେ, ପାହୁଲାଟିଏ ମୋ ପାଖରୁ ବାହାରିବ ନାହିଁ । ତୋତେ ମୁଁ କେଉଁଠୁ ଗ୍ଭରିଟଙ୍କା ଆଣି ଦେବି କହିଲୁ ?"

ପୁଅ କହିଲା—"ବାପାଙ୍କ ପୁରୁଣା କୋଟଟା ସେଠି ଝୁଲୁଛି । ସେଥିରେ କାଳେ କ'ଣ ଥାଇପାରେ । ପକେଟ ଯାଇ ଦେଖୁନୁ ।"

ପୁଅ କଥା ମାନି ମା ପୁରୁଣା କୋଟର ପକେଟ ଦରାଣ୍ଡିଲା । ସେଥିରେ ଛଟି ଟଙ୍କା ଥିଲା । ପୁଅର ଦରକାର ଠାରୁ ଏହା ବହୁତ ବେଶୀ । ସେତକ ପାଇ ମା ପୁଅ ଉଭୟେ ଖୁସି ।

ଉଦ୍ଧାମ କହିଲା—"ମୋତେ ସେଥିରୁ ଗୋଟିଏ ଟଙ୍କା ଦେ । ମୁଁ ବିଦେଶ ଯାଏ । ତୁ ବାକିଟଙ୍କା ରଖ । ସେଥିରେ ମୁଁ ଆସିବା ପର୍ଯ୍ୟନ୍ତ ଚଳୁଥିବୁ ।"

ପରଦିନ ଭୋରରୁ ଉଦ୍ଧାମ ଅନୁକୂଳ କରି ବାହାରିଗଲା । ବାଟରେ ଘନ ଜଙ୍ଗଲ । ସେଥିକି ଉଦ୍ଧାମର ଖାତିର ନାହିଁ । ସେ ତାର ରାସ୍ତାରେ ଚାଲିଥାଏ ।

ହଠାତ୍ ସେ ଦେଖିଲା—ରାସ୍ତା ଉପରେ ବାଘୁଣୀଟିଏ ବସି ପଞ୍ଝା ଚାଟିବାରେ ବ୍ୟସ୍ତ । ବେଳେ ବେଳେ ସେ ବୋବାଳି ପକାଉଥାଏ । କି କରୁଣ ସେ ବୋବାଳି !

ବାଘୁଣୀକୁ ଦେଖି ଉଦ୍ଧାମ ଚମକିଆ । ପଳାଇବାକୁ ସେ ଭାବୁଥାଏ । ଏତିକିବେଳେ ବାଘୁଣୀ ତାକୁ ପାଖକୁ ଡାକିଲା । ମଣିଷ ଭଳି ତାର କଥା ।

ବାଘୁଣୀର କଥା ଅତି କୋମଳ । ପ୍ରାଣସ୍ପର୍ଶୀ । କିନ୍ତୁ ତାକୁ ବିଶ୍ୱାସ କରିବାକୁ ଉଦ୍ଧାମର ଗୁଣ୍ଡି ପଡଉ ନଥାଏ । ସେ ଭାବୁଥାଏ —ବାଘୁଣୀର କଥା ନ ମାନିଲେ, ବିପଦ ବହୁତ । ହୁଏତ ବାଘୁଣୀ ରାଗିଯିବ । ଏକା ଝାମ୍ପରେ ତାର ଦଫାରଫା ଶେଷ । ଉପାୟ ନାହିଁ । ତା କଥା ମାନିବାକୁ ହେବ । ତେଣୁ ସେ ବାଘୁଣୀ ପାଖକୁ ଗଲା । ସେତେବେଳକୁ ଦେହରେ ତାର ରକ୍ତ ନଥାଏ ।

ଉଦ୍ଧାମକୁ ପାଖରେ ଦେଖି ବାଘୁଣୀ ଭାରି ଖୁସି । ସେ ଗେହ୍ଲେଇ କରି କହିଲା—"ତୁ ଗୋଟିଏ ଭଲ ପିଲା । ମୋତେ ଟିକିଏ ସାହାଯ୍ୟ କର । ମୋ ପଞ୍ଝାରେ କଣ୍ଟାଟିଏ ପଶି ଭାରି କଷ୍ଟ ହେଉଛି । ଦୟା କରି କଣ୍ଟାଟିକୁ ବାହାର କରିଦେ ।"

ଉଦ୍ଧାମ କହିଲା—"ତମର କଷ୍ଟ ଦେଖି ମୋତେ ଭାରି ବିକଳ ଲାଗୁଛି । କଣ୍ଟା ବାହାର କରିବାକୁ ମୋର ଖୁବ୍ ଇଚ୍ଛା । କିନ୍ତୁ ତମର ପଞ୍ଝା ଧରି ଯାଇଛି । ହାତ ଦେଲେ କାଟିବ । ତୁମେ ସହି ପାରିବ ନାହିଁ । ପ୍ରାଣ ବିକଳରେ ମୋତେ ଚିପି ଦେବ । ମୁଁ ସମ୍ଭାଳି ପାରିବି ନାହିଁ । ମରିଯିବି । ତେଣୁ ତମର କଣ୍ଟା ବାହାର କରିବାକୁ ମୋତେ ଡର ମାଡ଼ୁଛି ।"

ବାଘୁଣୀ ତ ହରିକାଠରେ ପଡ଼ିଛି । ପିଲାଟିର [illegible]ଦପାଞ୍ଚ କଥା ଶୁଣି ସେ ଗୁନିଆ । ପିଲାଟିର ବିଶ୍ୱାସ ଜନ୍ମାଇବା ପାଇଁ ସେ ଚିତ୍କାର କଲା—"ନାଇଁ, ନାଇଁ, ଏହା ଅସମ୍ଭବ । ମୁଁ କମା ସେମିତି କରିବ ନାହିଁ । ତୁ କଣ୍ଟା ବାହାର କଲାବେଳେ ମୁହଁକୁ ମୁଁ ଏପଟକୁ ବୁଲାଇ ଦେବି । କଷ୍ଟ ହେଲେ ପାଖ ଗଛକୁ ଚିପି ଧରିବ ।"

ବାଘୁଣୀକୁ ଉଦ୍ଧାମର ଭାରି ଭୟ । ତା କଥାକୁ ଅବିଶ୍ୱାସ କଲେ ବି କହିବାର ଶକ୍ତି ତାର ନାହିଁ । ସେଥିପାଇଁ ସେ ବାଘୁଣୀ ପାଖରେ ବସି ତାର ପଞ୍ଝାକୁ ନେଇ ତା ଆଣ୍ଠୁ ଉପରେ ରଖିଲା । ପକେଟରୁ ଛୁରି ନେଇ ବାଘୁଣୀର ପଞ୍ଝାରୁ କଣ୍ଟା ବାହାର କଲା । ସେତେବେଳେ ବାଘୁଣୀର କି କଷ୍ଟ । ପ୍ରାଣ ବିକଳରେ ପାଖ ଗଛକୁ ଧକ୍କାଟିଏ ମାରିଲା । ସେଇ ଧକ୍କାରେ ଗଛଟି ମଡ଼ ମଡ଼ ଡାକ ଦେଇ ଟଳି ପଡ଼ିଲା ।

କଣ୍ଟାଟି ବାହାରିଗଲା ପରେ ବାଘୁଣୀ ଆଶ୍ୱସ୍ତ । ପୂର୍ବ ଯନ୍ତ୍ରଣା ଆଉ ତାର ନାହିଁ । ସେ ଏବେ ବେଶ୍ ଖୁସି । ଉଦ୍ଧାମ ଉପରେ ସନ୍ତୁଷ୍ଟ । ଭାବିଲା—ଉଦ୍ଧାମ ଚେଷ୍ଟାରେ ସେ ବଞ୍ଚିଗଲା । ତା ଋଣ ଏ ଜୀବନରେ ଶୁଝି ହେବ ନାହିଁ ! ସେ କୃତଜ୍ଞ । ସେଥିପାଇଁ ଉଦ୍ଧାମକୁ ବାକ୍ସଟିଏ ଉପହାର ଦେଇ କହିଲା—"ଏଇଟି ତୋର ।

ଏହାକୁ ସାଥିରେ ନେଇ ଯାଅ । ବହୁ ଉପକାରରେ ଆସିବ । କିନ୍ତୁ ଖବରଦାର, ନଅ କୋଶ ନ ଯିବା ପର୍ଯ୍ୟନ୍ତ ଏହାକୁ କେବେହେଲେ ଖୋଲିବୁ ନାହିଁ ।”

ଉଦ୍ଧାମ ଗରିବ । ଭଲ ବାକ୍ସଟିଏ ଘରେ ତାର ନାହିଁ । ଏପରି ସୁନ୍ଦର ବାକ୍ସଟିଏ ପାଇବା ତା ପକ୍ଷରେ ଦୁର୍ଲଭ । ତେଣୁ ବାକ୍ସଟି ପାଇ ସେ ଖୁବ୍ ଖୁସି । ବାଘୁଣୀକୁ ନମସ୍କାର କରି ସେ ବିଦାୟ ନେଲା ।

ଉଦ୍ଧାମ ତା ବାଟରେ ଚାଲିଥାଏ । କାନ୍ଧରେ ତାର ବାକ୍ସ । ଛ’ କୋଶ ପର୍ଯ୍ୟନ୍ତ ବାକ୍ସଟି ତାକୁ ଫୁଲ ଭଳିଆ ଲାଗିଲା । ସାତ କୋଶ ଆରମ୍ଭରେ ବାକ୍ସର ଯେ ଓଜନ ଅଛି, ତାହା ତାର ଖିଆଲରେ ଆସିଲା । ଆଠ କୋଶ ବେଳକୁ, ବାକ୍ସର ଓଜନ ବହୁତ ହୋଇଗଲାଣି । କେବଳ ସେତିକି ନୁହେଁ, ପ୍ରତି ମୁହୂର୍ତ୍ତରେ ତାର ଓଜନ ବଢ଼ି ଚାଲିଛି । ନଅ କୋଶ ବେଳକୁ ଅବସ୍ଥା କାହିଲି ପାଦେ ଆଗେଇବା ତା ପକ୍ଷେ ମୁସ୍କିଲ ।

ବାକ୍ସର ଓଜନ ବଢ଼ୁଥିବାରୁ ସେ ବିବ୍ରତ । ବାକ୍ସର ଯେ ଓଜନ ବଢ଼େ, ସେ କାନ ହେଲା ବନଠାରୁ ଏକଥା ଶୁଣିନାହିଁ । କମିଆ ନକଲେ, ବାକ୍ସର ଓଜନ ବଢ଼ିବ ନାହିଁ, ସେ କଥା ସେ ଜାଣେ । ସେ ଭାବିଲା—ବାଘୁଣୀଟି କେଉଁଠୁ ବାକ୍ସ ପାଇବ ? ଯେ ବାକ୍ସ ଦେଲା, ସେ ଏକ ଡାହାଣୀ । ବାଘୁଣୀ ରୂପ ହୋଇ ବାକ୍ସ ଦେଲା । କମିଆ ବଳରେ ହଇରାଣ କରୁଛି । ଏକଥା ଯେମିତି ମୁଣ୍ଡରେ ପଶିଛି, ସେ ଆଉ ଯାଏ କୁଆଡ଼େ ? ଖରାପ କଥା ଥରେ ମୁଣ୍ଡରେ ପଶିଲେ, ସେ ବାହାରି ପାରେନାହିଁ । ବସା ବାନ୍ଧି କାୟା ବିସ୍ତାର କରେ । ଶେଷକୁ ସବୁବେଳେ ସେଇ ଖରାପ କଥା ମନକୁ ଆସେ । ତାକୁ ମନରୁ ବାହାର ନ କଲେ ମଣିଷ ତାର ଦାସ

ହୋଇଯାଏ । ଏଇନେ ଉଦ୍ଧାମର ଗୋଟିଏ ଚିନ୍ତା । ସେ ଖାଲି କମିଆ କଥା ଭାବୁଛି । ତାର ଶେଷକୁ ଉପୁଙ୍କର ସ୍ୱଗତୋକ୍ତି । ସେ ମନେ ମନେ କହିଲା—'ବାଃ ! ଉପକାର କଲି । ସେଥିପାଇଁ ଅଯଥା ଏ ଭାର ବୋହୁଛି । ନାଁ, ମୁଁ ଆଉ ଏଇ ବାକ୍ସ ବୋହି ପାରିବିନାହିଁ । ଏଇଠି ଏଇଟା ପଡ଼ିଥାଉ ।''

ସାଥେ ସାଥେ ବାକ୍ସଟିକୁ ସେ ଫିଙ୍ଗିଦେଲା । ତଳେପଡ଼ି ବାକ୍ସଟି ଦ୍ୱ'ଫାଳ । ତା ଭିତରୁ ବାହାରି ଆସିଲା ଅତି ଗ୍ଲୋଟ ବୁଢ଼ା ମଣିଷଟିଏ । ଗୃଖଣ୍ଡେ ତାର ଉଚ୍ଚ । ଲମ୍ବା ଦାଢ଼ି । ପାଚିକରି ଏକଦମ୍ ଧଳା । ତାହା ତଳେ ଘୁଷୁରିଥାଏ । ଲମ୍ବ ତାର ପ୍ରାୟ ଗୃଖଣ୍ଡେ ଗୃରି ଆଙ୍ଗୁଳି ।

ଠିକ ମଣିଷଟି ବାକ୍ସରୁ ବାହାରି ଆସି ଖୁବ୍ ଏପଟ ସେପଟ ହେଲା । ଜଣାଯାଉଥାଏ—ସେ ଭାରି ଅସ୍ଥିର । କ୍ଷୁବ୍ଧ । ସ୍ୱଗରେ ତମତମ । ଆଖି ଦିଟା ତାର ଜଳୁଥାଏ । ତାହା କିନ୍ତୁ ଉଦ୍ଧାମ ଉପରେ ଲାଖି ରହିଥାଏ । ସତେକି ଯେମିତି ସେ ଉଦ୍ଧାମକୁ ଜାଳି ପୋଡ଼ି ପାଉଁଶ କରିଦେବ । ସେ ବି ବଡ଼ ପାଟିକରି ଗାଳି ଦେଉଥାଏ ।

ମଣିଷ ପୁଣି ଏପରି ଗ୍ଲୋଟ ହୋଇପାରନ୍ତି, ଏକଥା ଉଦ୍ଧାମର କଳ୍ପନାର ବାହାରେ । ସେଥିପାଇଁ ତାକୁ ଦେଖି ଉଦ୍ଧାମର କୌତୁହଳ ହେଲା । ବାକ୍ସ ବୋହିବାର ପୂର୍ବ କଷ୍ଟ ସେ ଭୁଲି-ଯାଇଛି । ସେ ଥଟ୍ଟାଳିଆ ସ୍ୱରରେ ଠିକ ମଣିଷଟିକୁ ଲକ୍ଷ କରି କହିଲା—''ଭଦ୍ରଲୋକ । ତୁମେ ଖୁବ୍ କ୍ଷୁଦ୍ର । ଅଥଚ ତମର ଓଜନ ତମ ତୁଳନାରେ ଖୁବ୍ ବେଶୀ । ତାହା ଆଶା କରି ହେବନାହିଁ । ତମର ନାଁ ?''

ପାଟିରୁ କଥା ଛଡ଼ାଇ ନେଇ କ୍ଷୁଦ୍ର ମଣିଷଟି କହିଲା— "ଶ୍ରୀଯୁକ୍ତ ଗୁଞ୍ଜନ ।"

ଉଦ୍ଧାମ ମଜାକରି କହିଲା—"ତମ ବ୍ୟକ୍ତିତ୍ୱ ବାକ୍ସ ଶୂନ୍ୟ । ମୁଁ ଭାବୁଛି, ଅଧିକ ଦୂର ତମକୁ ନ ବୋହି ଠିକ୍ କରୁଛି ।"

ଶ୍ରୀଯୁକ୍ତ ଗୁଞ୍ଜନଙ୍କର ରାଗ କମି ଆସିଲାଣି । ସେ ଏଥର ପ୍ରକୃତିସ୍ଥ । ସେ ଧୀର ଗମ୍ଭୀର କଣ୍ଠରେ କହିଲେ—" ଦାନ ଗ୍ରହଣ କଲେ, ଦାତାର ସର୍ତ୍ତ ମାନିବା ଉଚିତ । ଯେ ନ ମାନେ, ସେ ଅଭଦ୍ର । ନଅକୋଶ ଶେଷ ହେବା ପୂର୍ବରୁ ତୁମେ ବାକ୍ସ ଫିଙ୍ଗି ଭଲ କାମ କଲନାହିଁ । ନଅକୋଶ ଶେଷ ହୋଇଥିଲେ, ତୁମେ ବାକ୍ସରୁ ବହୁ ମୂଲ୍ୟବାନ ଜିନିଷ ପାଇଥାନ୍ତ । ସେ ତମର ଦୁର୍ଭାଗ୍ୟ । ସେ ସବୁର ଆଲୋଚନା ଏଠି ନିରର୍ଥକ । ତୁମେ ପରୋପକାରୀ, ଏହା ସତ । ମୋର ମାଲିକ ତମ ଉପରେ ସନ୍ତୁଷ୍ଟ । ତୁମର ସେବା କରିବାକୁ ମୋତେ ସେ ପଠାଇଛନ୍ତି । ଆଦେଶଦେଲେ ପାଳନ କରିବ ।"

ଠିକ ମଣିଷର କଥା ଉଦ୍ଧାମ ମନକୁ ପାଇଲା ନାହିଁ । ଏତିକି ବଳକଟେ ମଣିଷ, ସେ ପୁଣି ତାର ଆଦେଶକୁ ପାଳିବ । ଏସବୁ ତାକୁ କେମିତି କେମିତି ଲାଗିଲା । ତେଣୁ ତାକୁ ପରୀକ୍ଷା କରିବାକୁ ତାର ଭାରି ଇଚ୍ଛା । ସେଥିପାଇଁ ସେ କହିଲା—"ତୁମେ ମୋର ତତ୍ତ୍ୱ ନେବାକୁ ଆସିଛ ବୋଲି ଶୁଣି ଖୁସିହେଲି । ତମକୁ ମୁଁ ବୋହି ବୋହି କ୍ଳାନ୍ତ । ଅବଶ୍ୟ, ମୋତେ ବି ବହୁତ ଭୋକ । ପାଖରେ ଦୋକାନ ନାହିଁ । ମୋ ପାଖରେ ଗୁଡ଼ିଏ ଟଙ୍କା ଅଛି । ତାକୁନେଇ କିଛି ଖାଇବା ଜିନିଷ ଶିଘ୍ର ଆଣିପାରିବ କି ?"

ଉଦ୍ଧାମ ଗୁଡ଼ାଏ ଟି ଥାକ ଟଙ୍କା ଦେଖାଇବା ମାତ୍ରେ ଶ୍ରୀଯୁକ୍ତ ଗୁଞ୍ଜନ ସେତିକି ଥାକ ତା ହାତରୁ ଝାମ୍ପି ନେଲା । ତାପରେ ଗୁଣୁ

ଗୁଣୁ ଶବ୍ଦ । ସାଙ୍ଗେ ସାଙ୍ଗେ ଶ୍ରୀଯୁକ୍ତ ଗୁଞ୍ଜନ ଅନ୍ତର୍ଦ୍ଧାନ ।

ପାଖ ସହରର ଗୋଟିଏ ବଡ଼ ମିଠା ଦୋକାନ । ସେଠି ବିଭିନ୍ନ ପ୍ରକାର ମିଠା ପତ୍ରତରେ ସଜାହୋଇ ଥୁଆ ହୋଇଥାଏ । ଶ୍ରୀଯୁକ୍ତ ଗୁଞ୍ଜନ ସେଠି ଯାଇ ହାଜର । ଦୁଇଟି ପତ୍ରତ ମଝିରେ ସେ ଠିଆ ହୋଇଗଲେ । ସେ ତ ଖୁବ୍ ଗ୍ଧେଟ । ସେଥିପାଇଁ ଦୋକାନୀର ନଜର ତାଙ୍କ ଉପରେ ପଡ଼ିଲା ନାହିଁ । କିଛି ସମୟ ଗ୍ଭଲିଗଲା । ଶ୍ରୀଯୁକ୍ତ ଗୁଞ୍ଜନ ସେଇମିତି ସେଠି ଠିଆ ହୋଇଥାନ୍ତି । ସେ ଦେଖିଲେ ଦୋକାନୀ ଅନ୍ୟ ଗ୍ରାହକଙ୍କ କଥା ବୁଝିବାରେ ବ୍ୟସ୍ତ । ଅଥଚ ଆଉ ଆଖିରେ ତାଙ୍କୁ ଗ୍ଭହୁଁ ନାହିଁ । ତେଣୁ ରାଗ ତାଙ୍କର ପଞ୍ଚମ । ବଡ଼ ପାଟିରେ ଶ୍ରୀଯୁକ୍ତ ଗୁଞ୍ଜନ ଗର୍ଜି ଉଠିଲେ—'ହେ ମିଠା ବାଲା ! ମୁଁ ଏଠି କେତେବେଳୁ ଠିଆ ହେଲେଣି । ତୋତେ କ'ଣ ଦେଖାଯାଉ ନାହିଁ । ମତେ ଶୀଘ୍ର ଭଲ ଭଲ ମିଠା ଶହେଟି ଦେ ।"

ଏକାବେଳକେ ଶହେଟି ମିଠା । ଏ କଥା ଶୁଣିବା ମାତ୍ରେ ଦୋକାନୀ ଖୁବ୍ ଖୁସି ହେଲା । ଆଗ୍ରହରେ ମୁଣ୍ଡ ଉଠାଇଲା । କିନ୍ତୁ କୌଣସି ଗ୍ରାହକକୁ ଦେଖିଲା ନାହିଁ । ସେ ଆବାକାବ ହୋଇଗଲା । କେହି ତ କେଉଁଠି ନାହାନ୍ତି ଅଥଚ ବରାଦ ହେଉଛି । ତାକୁ ଏହା ସବୁ ଆଶ୍ଚର୍ଯ୍ୟ ଲାଗିଲା । କିଛି ଥଳକୂଳ ପାଇଲା ନାହିଁ । ପୁଣି ନିଜ କାମରେ ମନ ଦେଲା ।

ଶ୍ରୀଯୁକ୍ତ ଗୁଞ୍ଜନ ଭାବିଲେ—ଦୋକାନୀ ତାଙ୍କୁ ବେଖାତିର କରୁଛି । ସେଥିପାଇଁ ତାଙ୍କ କଥାକୁ ସେ କାନଉ ନାହିଁ । ତାଙ୍କର ରାଗ ବଢ଼ିଗଲା । ଚଡ଼ା ଗଳାରେ ସେ ଚିତ୍କାର କଲେ—"ତତେ ପରା ମିଠା ଦେବାକୁ କହିଲି, ମିଠା ନ ଦେଇ ତୁ ଅନ୍ୟକାମ କଣ କରୁଛୁ ?"

ବରାଦଟି ସ୍ପଷ୍ଟ । ଦୋକାନୀ ଭଲ ଭାବରେ ତାହା ଶୁଣିପାରୁଛି ଅଥଚ ବରାଦ ଦେଉଥିବା ଲୋକର ଦେଖାନାହିଁ । ସେଥିପାଇଁ ଦୋକାନୀ ବିବ୍ରତ । ବ୍ୟସ୍ତ ।

ଦୋକାନୀର ବ୍ୟସ୍ତତା ଦେଖି ଶ୍ରୀଯୁକ୍ତ ଗୁଞ୍ଜନ ଆତୁର ହେଲେ । ସେ ଦୋକାନୀ ପାଖକୁ ଟିକିଏ ଯାଇ କହିଲେ—"ବୋକା କାହାଁକା ! ମୁଁ ତୋ ମିଠା ଥାଳି ପାଖରେ କେଉଁ କାଳରୁ ଠିଆ ହେଲେଣି ? ତୁ ମୋତେ ଦେଖି ପାରୁନାହୁଁ ?"

ଦୋକାନୀ ଏତେବେଳକେ ଗ୍ରାହକକୁ ଯାଇ ଦେଖିଲା । ତାର ଆଖିକୁ ସେ ବିଶ୍ୱାସ କରିପାରିଲା ନାହିଁ । ମଣିଷ ବୋଲି ବିକଟେ । ଲମ୍ବା ଦାଢ଼ି ତାର ତଳେ ଘୁଷୁରୁଛି । ରାଗରେ ସେ ପୁଣି ତମତମ । ଦୋକାନୀଟିକୁ ସବୁ ଅପସନ୍ଦ ଲାଗୁଥାଏ । ପୁଣି ସେ ଭାବିଲା—ଛୋଟ ହେଉ ବା ବଡ଼ ହେଉ, ସେ ତାର ଗ୍ରାହକ, ଈଶ୍ୱର । ତାଙ୍କୁ ନେଇ ତାର ବ୍ୟବସାୟ । ତା ଛଡ଼ା ଏ ତ ସାଧାରଣ ଗ୍ରାହକ ନୁହନ୍ତି । ସେ ଟାଏ ଦି'ଟା ନୁହେଁ—ଏକ-ବାରକେ ଶହେଟା ମିଠା କିଣିବେ । ତେଣୁ ତାଙ୍କୁ ସମ୍ମାନ ଦେବା ତା'ର କର୍ତ୍ତବ୍ୟ । ତାଙ୍କୁ ସେ ଯେ ଦେଖି ପାରିନାହିଁ, ସେଇଟା ତାର ଭୁଲ । ଏ ଦୋଷ ଅକ୍ଷମଣୀୟ । ତେଣୁ ସେ ଆସନରୁ ଉଠି ଟିକି ମଣିଷଙ୍କୁ କ୍ଷମା ମାଗିଲା । ଆଉ ହେଳା ନ କରି, ଶହେଟି ବଡ଼ ବଡ଼ ମିଠାର ପୁଟୁଳାଟିଏ ବାନ୍ଧି ଦେଲା । ତାହା ଗୋଟିଏ ବଡ଼ ବୋଝ ହୋଇଗଲା ।

ଶ୍ରୀଯୁକ୍ତ ଗୁଞ୍ଜନ କହିଲେ—"ବୋଝଟି ମୋ ହାତକୁ ଟେକିଦେ ।" ଦୋକାନୀ କହିଲା "ମହାଶୟ, ଏହାର ଓଜନ ତ ବହୁତ ବେଶୀ । ନେବେ କେମିତି ?"

ଦୋକାନୀର ପ୍ରଶ୍ନରେ ଶ୍ରୀଯୁକ୍ତ ଗୁଞ୍ଜନ ରାଗରେ ନିଆଁ । ସ୍ୱର

ତାଙ୍କର ରୁଷ । ସେ କହିଲେ—"ମୁଁ ତାକୁ କେମିତି ନେବ, ସେ କଥା ମତେ ଲଗା । ତୋର ସେଥିରେ ମୁଣ୍ଡ ଖେଳେଇବା ଦରକାର ନାହିଁ । ମୁଁ ଯାହା କହୁଛି, ତା କର । ଶୀଘ୍ର ପୁଟୁଳା-ଟିକୁ ଦେ । ହଁ, ଏହାର ଦାମ ଗୁଡ଼ାଏଟଙ୍କା ତ ?"

ଏତକ କହି ସେ ତାଙ୍କ ପକେଟରେ ଥିବା ଗୁଡ଼ାଏଟି ଟଙ୍କାକୁ ଝଣଝଣ କଲେ ।

ଦୋକାନୀ ମାନେ ହିଁ ଲୋଭୀ । ଟଙ୍କାର ଝଣଝଣ ଶବ୍ଦରେ ସେ ଉତ୍ଫୁଲ୍ଲ । କିନ୍ତୁ ଭାବୁଥାଏ—ଗୁଖଣ୍ଡେ ବୋଲି ତ ମଣିଷ । ତାଙ୍କ ପକ୍ଷେ ବଡ଼ ଓଜନିଆ ଗଣ୍ଠିଲିଟି ନେବା ଅସମ୍ଭବ । ସେ ଦୁଃସାହସ କରୁଛି, କରୁ । ମୁଁ ମୋ ପଇସାତକ ପାଇଲେ ଗଲା । ସେ ପାନେ ପାଇଲେ ବଳେ ଶିଖିବ । ସେଥିରେ ମୋର ଯାଏ ଆସେ କେତେ ? ଭଲ କଥା କହିଲେ ତା ଦେହରେ ଯାଉନାହିଁ । ସେ ତ ଖାଲି ରଗିବାରେ ଅଛି । କିଏ କାହିଁକି କହିବାକୁ ଯାଇ ଦି'ପଦ ଶୁଣିବ । ଏହା ଭାବି ଦୋକାନୀଟି "ହଉ ଆଜ୍ଞା" କହି ଗଣ୍ଠିଲିଟିକୁ ଟିକି ମଣିଷର ଶ୍ରେଷ୍ଠ ହାତକୁ ବଢ଼ାଇ ଦେଲା ।

ତାପରେ ମହୁମାଛିର ଗୁଣୁ ଗୁଣୁ ଶବ୍ଦ । ଆଖି ପିଛୁଳାକେ ଶ୍ରୀଯୁକ୍ତ ଗୁଞ୍ଜନ ମିଠାତକ ଧରି ଉଭେଇ ଗଲେ । ଦୋକାନୀ ଢଟରୁ ଉପରକୁ ଆବାକାବା ହୋଇ ଅନାଇଥାଏ । କିଛି ସମୟ ଗଲା । ଦୋକାନୀଟି ଏବେ ପ୍ରକୃତିସ୍ଥ । ଘଟଣାଟି ତାକୁ ପ୍ରହେଳିକା ଭଳି ଲାଗିଲା । ଯାହାହେଉ, ମିଠାର ଦାମ ହରାଇ ଥିବାରୁ ସେ ତାର କାନମୁଣ୍ଡା ଆଉଁସି ରହିଲା ।

ଶ୍ରୀଯୁକ୍ତ ଗୁଞ୍ଜନ ସେଠୁ ଯାଇ ଅନ୍ୟ ଦୋକାନରେ ହାଜର । ଦୋକାନଟି ମଇଦା ବସ୍ତାରେ ପୂର୍ଣ୍ଣ । ଗୋଟେ ମଇଦା ବସ୍ତା ପଛରେ ସେ ଠିଆ ହୋଇ ବଡ଼ ପାଟିରେ କହିଲେ—"ମହାଜନେ !

ମୋତେ ଦୁଇ ମହଣ ମଇଦା ଦିଅ ।"

ଏ ବରାଦ ଶୁଣି ଦୋକାନୀଟି ମୁଣ୍ଡ ଉଠାଇଲା । କିନ୍ତୁ ଗ୍ରାହକକୁ ଦୋକାନ ଭିତରେ ଦେଖିଲା ନାହିଁ । ଭାବିଲା—ବାହାରେ ହୁଏତ ଠିଆ ହୋଇଥିବ । ତେଣୁ ଝରକା ଆଉ କବାଟ ବାଟେ ବାହାରକୁ ଉଣ୍ଡିଲା । କାହାକୁ କେଉଁଠି ଦେଖିଲା ନାହିଁ । ଶେଷକୁ ବାହାରକୁ ଗଲା । ସେଠି ବି କେହି ନାହାନ୍ତି । ଫେରି ଆସି ପୁଣି ତା ଆସନରେ ବସିଲା । ଏତିକିବେଳେ ପୁଣି ବରାଦ । ଦୋକାନୀଟି ଶବ୍ଦ ଆସୁଥିବା ଦିଗକୁ ଅନାଇଲା । ଦେଖିଲା—ମଇଦା ବସ୍ତା ପାଖରେ ଟିକି ମଣିଷଟିଏ ଠିଆ ହୋଇଛି । ମୁଖଣ୍ଡେ ତା'ର ଉଚ୍ଚ, ଦାଢ଼ି ଖୁବ୍ ବଡ଼ । ତଳେ ଘୁଷୁରୁଛି । ଦୋକାନୀଟି ଏଇ ଗୋଟ ମଣିଷକୁ ଆବାକାବା ହୋଇ ଅନାଇ ରହିଲା । ତାର ଏଇ ଢଙ୍ଗ ଦେଖି ଶ୍ରୀଯୁକ୍ତ ଗୁଞ୍ଜନ ଗର୍ଜି ଉଠିଲେ—"ହଇରେ ମୋତେ ଅନେଇ ଦେଖୁଛୁ କଣ ? ମଇଦା ପରା ମାଗୁଛି । ଶୁଣାଯାଉ ନାହିଁ ! ଶୀଘ୍ର ମଇଦା ଦେ ।"

ଏକଥା ଶୁଣିବି ଦୋକାନୀ ପ୍ରକୃତିସ୍ଥ ହେଲା ନାହିଁ । ସେଇମିତି ଆଶ୍ଚର୍ଯ୍ୟ ହୋଇ ସେ ତାକୁ ଅନାଇଥାଏ ।

ଟିକି ମଣିଷଟି ଏ ଢଙ୍ଗ ରଙ୍ଗ ଦେଖି ଅସ୍ଥିର । ସେ ଆଉ ବରଦାସ୍ତ କରି ପାରିଲେ ନାହିଁ । ସେ ସିଧା ଦୋକାନୀ ପାଖକୁ ଦୌଡ଼ିଗଲେ । ତାକୁ ମାରେ କି ନ ମାରେ । ଗର୍ଜ'କରି କହିଲେ—"ବୁଢ଼ୁ, ଖୁଣ୍ଟଟା ଭଳିଆ ବସିଛୁ । ମୋ ବରାଦ ଶୁଣିପାରୁ ନାହୁଁ । ଦେ ମୋତେ ଶୀଘ୍ର ଦୁଇ ମହଣ ମଇଦା ଦେ ।"

ଏଥରକ ଦୋକାନୀର ଚେତା ପଶିଲା । ସେ ଦେଖିଲା—ଗ୍ରାହକଟି ସିନା ସାନ । କିନ୍ତୁ ବରାଦ ତାର ବଡ଼ । ଏପରି ଗ୍ରାହକକୁ ଉପେକ୍ଷା କରି ହେବ ନାହିଁ । ସେ ଅତି ବିନମ୍ର କଣ୍ଠରେ କହିଲା

"ଦୁଇ ମହଣ ମଇଦାର ଓଜନ ତ ବହୁତ ବେଶୀ । ଗାଡ଼ କମ୍ବା ଭାରବାହୀ ପଶୁ ବ୍ୟତୀତ ଏହାକୁ ନେବା ଅସମ୍ଭବ । ଆପଣ କ'ଣ ଆଣିଛନ୍ତି ?

ପାଦକୁ ବାଡ଼େଇ ବାଡ଼େଇ ଟିକ ମଣିଷଟି ଗର୍ଜି ଉଠିଲେ—"ଆରେ ଓଲୁ ! ତୁ ତ ଜିନିଷ ଦେବୁ, ଦାମ ପାଇବୁ । ମୁଁ କେମିତି ନେବି ? ସେ କଥାରେ ତୋର ଯାଏଆସେ କେତେ ?" ଏହା କହି ତାଙ୍କ ପକେଟରେ ଥିବା ମୁଦ୍ରାଗୁଡ଼ିକୁ ଝଣଝଣ କଲେ ।

ଦୋକାନୀଟି ଭାବିଲା—ଗ୍ରାହକଟି ତାର ଏକଜିଦିଆ, ଅବୁଝା । ଭଲ କଥା ତାକୁ ଗନ୍ଧଉଛି । ଦୁଇ ମହଣିଆ ବସ୍ତା ତାକୁ ମାଡ଼ି ବସିଲେ, ସେ ଚାପି ହୋଇଯିବ । ସେକଥା ସେ ଜମା ବୁଝୁ ନାହିଁ । ବସ୍ତାଟିକୁ ନନେ ଟେକ ନେବାକୁ ସକସକ । ଏ ଭଳିଆ ଲୋକକୁ ବୁଝାଇ ଲାଭ ନାହିଁ । ବରଂ ବସ୍ତା ଟେକୁ । ଚେଙ୍ଗେ ପାଇଲେ ପୁଅର ମନ ଘର ଧରିନେବ ।

ସେ ଆଉ ଡେରି କଲା ନାହିଁ । ମଇଦା ବସ୍ତାଟିକୁ ଗଡ଼ାଇ ଆଣି ଟିକ ମଣିଷ ପାଖରେ ଡ଼େରିକରି ରଖିଦେଲା । ତାପରେ ଦାମ ପାଇଁ ଟିକ ମଣିଷ ଆଡ଼କୁ ହାତ ବଢ଼ାଇଲା । ଟିକ ମଣିଷଟି ପଇସା ତ ଦେଲେ ନାହିଁ, ଗୁଣୁ ଗୁଣୁ ଶବ୍ଦ କରି ମଇଦା ବସ୍ତାଟିକୁ ନେଇ ଚମ୍ପଟ । ସବୁ ଆଖି ପିଛୁଳାକେ ଘଟିଗଲା । ଏ ଘଟଣା ଦେଖି ଦୋକାନୀ ସ୍ତମ୍ଭୀଭୂତ, ନିର୍ବାକ । କ'ଣ କରିବାକୁ ହେବ ? ଜାଣିପାରିଲା ନାହିଁ ।

ଏଣେ ଉଦ୍ଧାମ ବହୁ ସମୟ ଅପେକ୍ଷା କଲାଣି, ଅଥଚ ଶ୍ରୀଯୁକ୍ତ ଗୁଞ୍ଜନଙ୍କର ଦେଖାନାହିଁ । ତାଙ୍କ ବାଟକୁ ଚାହିଁ ଚାହିଁ ଉଦ୍ଧାମର ଆଖିରୁ ପାଣି ମଲାଣି । ସେ ଆଉ ଅପେକ୍ଷା କରି ପାରୁନାହିଁ । ଖାଲି ବିରକ୍ତ ଲାଗୁଛି । ସେ ବସିବା ଜାଗାରୁ ଉଠି ଏପଟ ସେପଟ ହେଲା ।

ଏତିକିବେଳେ ଗୁଣୁ ଗୁଣୁ ଶବ୍ଦ । ତାପଛେ ପଛେ ଶ୍ରୀଯୁକ୍ତ ଗୁଞ୍ଜନ ହାଜର । ଗୋଟିଏ ହାତରେ ମିଠା ଗଣ୍ଠିଲି । ଆଉ ହାତରେ ମଇଦାର ଅଖା । ମୁହଁରୁ ତାଙ୍କର ଗମ୍‌ଗମ୍ ହୋଇ ଝାଳ ବୋହୁଥାଏ । ମଇଦା ବସ୍ତା ଓ ମିଠା ଗଣ୍ଠିଲିକୁ ସେ ତଳେ ଥୋଇଦେଲେ । ତାପରେ ପକେଟରୁ ରୁମାଲ୍ ବାହାର କରି ମୁହଁ ପୋଛିବାରେ ଲଗିଲେ ।

ଟିକିଏ ଦମ୍ ନେଇ ଶ୍ରୀଯୁକ୍ତ ଗୁଞ୍ଜନ ଉଦ୍ଧାମକୁ କହିଲେ—"ଖୁବ୍ ଭୋକ ହେଉଛି । ଟିକିଏ ଅପେକ୍ଷା କର । ମୁଁ ମଇଦା ଆଉ ମିଠା ଆଣିଛି । ଚୁଲି ଲଗାଇ ଦି'ଟା ପିଠା କରିଦେବି । ମିଠା ଲଗାଇ ଖାଇଦେବ ।"

ବଡ଼ ଗଣ୍ଠିଲି ଓ ମଇଦା ବସ୍ତା ଦେଖି ଉଦ୍ଧାମର ପେଟ ପୂରିଗଲା । ସେ ଆଉ ବ୍ୟସ୍ତ ହେଲାନାହିଁ । ବରଂ ଶ୍ରୀଯୁକ୍ତ ଗୁଞ୍ଜନଙ୍କୁ ସେ ଧନ୍ୟବାଦ ଜଣାଇଲା ।

ଶ୍ରୀଯୁକ୍ତ ଗୁଞ୍ଜନ ଚଟାପଟ ଚୁଲି ଲଗାଇ ପିଠା କରିଦେଲେ । ଜଣାଗଲା, ସତେ କି ସେ ଯାଦୁକର । ଦୁଇ ମିନିଟରେ ସବୁ ଶେଷ । ମିଠା ଓ ପିଠା ଉଦ୍ଧାମ ଆଗରେ ବାଢ଼ିଦେଲେ । ତିନୋଟି ପିଠା ଓ ଦୁଇଟି ମିଠା ଖାଇ ଉଦ୍ଧାମ ସନ୍ତୁଷ୍ଟ । ଯେତେ ବଳାଇଲେ ବି ସେ ଆଉ କିଛି ଖାଇଲା ନାହିଁ । ଅବଶିଷ୍ଟ ପିଠା ଓ ମିଠାକୁ ଧରି ଶ୍ରୀଯୁକ୍ତ ଗୁଞ୍ଜନ ଖାଇବାକୁ ବସି ପଡ଼ିଲେ । ପ୍ରଥମଥର ଖାଦ୍ୟ ପାଟିକୁ ନେବା ପୂର୍ବରୁ ଉଦ୍ଧାମ ଆଡ଼କୁ ଅନାଇ କରି କହନ୍ତି—"ତମ ମଣିଷମାନଙ୍କର ପେଟ ଛୋଟ । କିନ୍ତୁ ଭୋକ ବହୁତ ।"

ସେଇଦିନୁ ଉଦ୍ଧାମ ଶ୍ରୀଯୁକ୍ତ ଗୁଞ୍ଜନଙ୍କ ଉପରେ ନିର୍ଭରଶୀଳ । ତାଙ୍କରି କଥାରେ ଚଳେ । ଶ୍ରୀଯୁକ୍ତ ଗୁଞ୍ଜନ ପ୍ରକୃତରେ ମୁରବି ଭଳିଆ ମଣିଷଟିଏ । ସେ ଉଦ୍ଧାମକୁ ଆପ୍ୟାୟିତ କରି ନେଲେଣି ।

ଶ୍ରୀଯୁକ୍ତ ଗୁଞ୍ଜନ ଭଲ ଭଲ କଥା ଉଦ୍ଧାମକୁ ଶିଖାନ୍ତି । ଉଦ୍ଧାମ ଗରିବ ଘରର ପିଲା । ଯୌବନକର ପୁଅ । ଚଳଣି ଆଗ୍ରହର ବ୍ୟବହାର ସେ କ'ଣ ଜାଣେନାହିଁ । ପାଞ୍ଚ ଲୋକଙ୍କ ଆଗରେ ପାଞ୍ଚ କଥା କହିବା ତା ପକ୍ଷେ ମୁସ୍କିଲ । ପାଞ୍ଚଲୋକ ଦେଖିଲେ, ତାକୁ ଡରମାଡ଼େ । କ'ଣ କେଉଁଠି କରବାକୁ ହେବ, କମିତି କଥା କହିବାକୁ ହେବ, ସେ ସବୁ ତାଲିମ ଦିଅନ୍ତି ।

ଶ୍ରୀଯୁକ୍ତ ଗୁଞ୍ଜନ କହନ୍ତି—"ପରିଭ୍ରମଣ ଶିକ୍ଷାର ଏକ ଅପରିହାର୍ଯ୍ୟ ଅଙ୍ଗ । ତେଣୁ ଶିକ୍ଷାପାଇଁ ବିଭିନ୍ନ ଜାଗା ଭ୍ରମଣ କରିବାକୁ ହେବ ।" ଶ୍ରୀଯୁକ୍ତ ଗୁଞ୍ଜନଙ୍କର କଥା ଶିକ୍ଷଣୀୟ । ବେଖାକ ହେବାର କିଛି ନାହିଁ । ଉଦ୍ଧାମକୁ ନେଇ ଶ୍ରୀଯୁକ୍ତ ଗୁଞ୍ଜନ ବିଭିନ୍ନ ଜାଗା ବୁଲିଲେ । ଉଦ୍ଧାମ ଅନୁଭବ କରେ—ସବୁ ଜାଗା ନୂଆ । ସବୁଠି ଦେଖିବାର ଅଛି । ଶିଖିବାର ବି ଅଛି । ସେମାନେ ବୁଲି ବୁଲି ଶେଷରେ ଗୋଟିଏ ସହରରେ ପହଞ୍ଚିଲେ । ସହରଟି ଦେଖି-ବାକୁ ସୁନ୍ଦର । ସେଠାକାର ରାଜାଙ୍କର ଗୋଟିଏ ବୋଲି ଝିଅ । ନାଁ ତାର ପୁଷ୍ପ । ସେ ଅପୂର୍ବ ସୁନ୍ଦରୀ । ଗୋଟିଏ ଗୃଡ଼ିଲରେ ଗଢ଼ା । ଲାବଣ୍ୟମୟୀ । ତନୁପାତଳୀ । ଖୁବ୍ ଉଶ୍ବାସ । ତାର ଓଜନ ପାଞ୍ଚଟି ଫୁଲର ଓଜନ ସଙ୍ଗେ ସମାନ । ପ୍ରତିଦିନ ସେ ଓଜନହୁଏ । ନକିତିର ଗୋଟିଏ ପଟେ ସେ ବସେ । ଆରପଟେ ପାଞ୍ଚୋଟି ଫୁଲ ଥୁଆହୁଏ । କଣ୍ଟାକୁ କଣ୍ଟା ଲାଗିଯାଏ । କେଉଁଦିନ କେବେହେଲେ ଏପଟ ସେପଟ ହୁଏ ନାହିଁ ।

ଉଦ୍ଧାମ ସହରଟି ଦେଖି ମୁଗ୍ଧ । ଅଦେକନ୍ଧ ଦେଖିବାରେ ସେ ବ୍ୟସ୍ତ । ଶୀଘ୍ର ଏ ସହର ବୁଲି ଦେଖି ସାରିଲେ, ପୁଣି ଅନ୍ୟ ସହରକୁ ଯିବାକୁ ହେବ । ସେଥିପାଇଁ ସେ ମୁହୂର୍ତ୍ତେ ବି ଡେରି କରେନାହିଁ । ସେ ଘୁରି ବୁଲୁ ବୁଲୁ ରାଜାଙ୍କ ଉଆସରେ ପଶିଗଲା । ସେଠି ପୁଷ୍ପକୁ

ସେ ଦେଖି ମୁଗ୍ଧ । ସବୁବେଳେ ଉଆସରୁ ସେ ଫେରିଆସିଲା ସତ, ମନଟା ତାର ଜେମାଙ୍କ ପାଖେ ରହିଗଲା । ତାକୁ ଆଉ କିଛି କହି-ବାକୁ ବା ଦେଖିବାକୁ ଭଲ ଲାଗିଲା ନାହିଁ । ଯେଉଁଠି ବସି ରହିଲା, ସେଇଠି । ଉଠିବାର ଆଗ୍ରହ ତାର ନଥିଲା । ନ ଖାଇ ନ ପିଇ ଶୁଖିଥିଲା ।

ଶ୍ରୀଯୁକ୍ତ ଗୁଞ୍ଜନ ସବୁ ଦେଖନ୍ତି । ସବୁ ଜାଣନ୍ତି । କିନ୍ତୁ ଯେ ନ ଜାଣିଲା ପରି ଚୁପ୍ ହୋଇ ରହନ୍ତି । ଦିନକୁ ଦିନ ଉଦ୍ଧାମ ଅବସ୍ଥା ଖରାପ ଆଡ଼କୁ ଗଡିଗଲା । ସେ ଏପରି ଦୁର୍ବଳ ହୋଇପଡ଼ିଲା ଯେ ଚାଲିବା ତା ପକ୍ଷେ କଷ୍ଟକର ବ୍ୟାପାର । ମନ ଭିତରେ ତାର ଦ୍ୱନ୍ଦ୍ୱ । ସେଥିପାଇଁ ଆଖିକୁ ନିଦ ଆସେ ନାହିଁ । ଖାଦ୍ୟ ପାଟିକୁ ନେଲେ, ତାକୁ ଖରାପ ଲାଗେ । ମନର ବଳ କମି ଗଲାଣି । ସେ ଆଉ ସମ୍ଭାଳି ପାରିଲାନାହିଁ । ଦିନେ ଶ୍ରୀଯୁକ୍ତ ଗୁଞ୍ଜନଙ୍କୁ କହିଲା— "ମତେ ଦୟାକରି ରାଜଜେମା ପୁଷ୍ପଙ୍କ ପାଖକୁ ନେଇଯାଅ । ମୁଁ ଟିକିଏ ତାଙ୍କ ସଙ୍ଗେ କଥାବାର୍ତ୍ତା କରିବି ।"

ଶ୍ରୀଯୁକ୍ତ ଗୁଞ୍ଜନ ଏକଥା ଶୁଣି ଚମକି ଉଠିଲେ । ତୁଣ୍ଡରେ ତାଙ୍କର ଥଣ୍ଡାଳିଆ ସ୍ୱର । ସେ କହିଲେ—"ତମକୁ ପୁଣି ମୁଁ ପୁଷ୍ପ ପାଖକୁ ନେବି ? ମୋର ଏଇ ଟିକି ହାତରେ ? ଏଇ ହାତ ଗୋଟିଏ ଗପର ବିଷୟବସ୍ତୁ ହୋଇପାରେ । କିନ୍ତୁ ମଣିଷ ବୋହିବା ପାଇଁ ଏହା ସଂପୂର୍ଣ୍ଣ ଅକ୍ଷମ । ମୋ ହାତ ତମ ହାତର ଦଶଭାଗରୁ ଭାଗେ । ମୋ ହାତରେ ତମ ଯିବା ଏକାନ୍ତ ଅସମ୍ଭବ । ବରଂ ତୁମେ ଚାହିଁଲେ, ମୋତେ ତୁମ ପାପୁଲିରେ ଅନାୟାସରେ ନେଇପାରିବ ।"

ଶ୍ରୀଯୁକ୍ତ ଗୁଞ୍ଜନର ପ୍ରତ୍ୟାଖ୍ୟାନ ଉଦ୍ଧାମକୁ ବିଶେଷ ବାଧିଲା ନାହିଁ । ମନ ଯେ କଷ୍ଟ ନ ହୋଇଛି, ତାହା କହିବା ମୁସ୍କିଲ । ତଥାପି ଉଦ୍ଧାମ ତାଙ୍କୁ ବାରମ୍ବାର ଅନୁରୋଧ କରିବାକୁ ସ୍ଥିର

କଲା । ଏପ୍ରକାର ନିଷ୍ପତ୍ତି ତା' ପକ୍ଷେ ସ୍ୱାଭାବିକ । ଉଦ୍ଧାମ ଗରିବ ମୈନିକର ପୁଅ । ଜୀବନରେ ବହୁ ଆଘାତ ସେ ସହିଛି । ନାହିଁ ଶୁଣିବାରେ ସେ ଅଭ୍ୟସ୍ତ । ତେଣୁ ଶ୍ରୀଯୁକ୍ତ ଗୁଞ୍ଜନଙ୍କର ଅମଙ୍ଗ ହେବାରେ ସେ ବ୍ୟଥିତ ନୁହେଁ । ବ୍ୟତିବ୍ୟସ୍ତ ବି ହେଲା ନାହିଁ । ବରଂ ସେ ଭାବିଲା—ଶ୍ରୀଯୁକ୍ତ ଗୁଞ୍ଜନ ହିଁ ତାର କେବଳ ସାହା ଭରସା । ତାଙ୍କୁ ଯେ କୌଣସି ପ୍ରକାରେ ମଙ୍ଗାଇବାକୁ ହିଁ ହେବ । ମଙ୍ଗାଇବାକୁ ଯେଉଁ ଉଦ୍ୟମ ଲୋଡ଼ା, ତାହା ସେ ଜାଣେ । ତାହା ସେ ଆରମ୍ଭ କରିଦେଲା ।

ବାରମ୍ବାର ଅନୁରୋଧ ଆଉ ଅନୁନୟରୁ ଶ୍ରୀଯୁକ୍ତ ଗୁଞ୍ଜନଙ୍କ ମନରେ ଦୟା ଆସିଲା । ଦିନକୁ ଦିନ ଉଦ୍ଧାମ କୃଶ ହେବାରେ ଲାଗିଛି । କାଳେ କଣ ହୋଇଗଲେ, ତାର ମାଲିକ ତାଙ୍କୁ ଦାୟୀ କରିବ । ସେ କଥା ସେ ଜାଣେ । ତା' ଛଡ଼ା ଉଦ୍ଧାମର ପୁଷ୍ପ ପ୍ରତି ଏକନିଷ୍ଠତା ଦେଖି ସେ ମୁଗ୍ଧ । ସନ୍ତୁଷ୍ଟ । ଏଥର ଉଦ୍ଧାମକୁ ସାହାଯ୍ୟ କରିବାକୁ ସେ ସ୍ଥିର କଲେ ।

ରାତି ଅଧ । ନିଶା ସାଇଁ ସାଇଁ ହୋଇ ଗର୍ଜୁଛି । ସାରା ସହର ଶୁନଶାନ୍ । ସମସ୍ତେ ନିଘୋଡ଼ ନିଦରେ ଶୋଇ ଯାଇଛନ୍ତି । ଶ୍ରୀଯୁକ୍ତ ଗୁଞ୍ଜନ ଉଦ୍ଧାମକୁ ହାତରେ ବସାଇ ଗୁଲିଲେ । ତାଙ୍କର ଗୁଣୁ ଗୁଣୁ ଶବ୍ଦ କାନ ଅତଡ଼ା ପକାଉଥାଏ । ଅବଲମ୍ବେ ସେ ପୁଷ୍ପର ଶୟନ କକ୍ଷରେ ପହଞ୍ଚିଗଲେ । ଗୁଣୁ ଗୁଣୁ ଶବ୍ଦରେ ପୁଷ୍ପର ନିଦ ଭାଙ୍ଗିଗଲା । ସେ ଦେଖିଲା ଯୁବକଟି ଦେଖିବାକୁ ଦିବ୍ୟ ସୁନ୍ଦର । ତାର ଖଟ ପାଖରେ ଆଣ୍ଠୁ ପକାଇ ତାକୁ ସେ ଅନାଇଛନ୍ତି । ପ୍ରଥମେ ସେ ସ୍ୱପ୍ନ ଦେଖୁଛି ବୋଲି ଭାବିଲା । ପରେ ଯେତେବେଳେ ପ୍ରକୃତରେ ଜଣେ ଯୁବକ ତା ଘରେ ଥିବାର ଜାଣିଲା, ସେ ଡରିଗଲା । ଚିତ୍କାର କରିବାକୁ ସେ ଉଦ୍ୟତ । ଏତିକିବେଳେ ଯୁବକଟି କହିଲା—

'ରାଜକୁମାରୀ, ତମ ରୂପରେ ମୁଗ୍‌ଧ ହୋଇ ମୁଁ ଏଠାକୁ ଆସିଛି । ତମର ଭୟ କରିବାର କାରଣ କିଛି ନାହିଁ । କିଛି ସମୟ କଥାବାର୍ତ୍ତା କରି ମୁଁ ଚାଲିଯିବି ।" ଯୁବକଟି ଶାନ୍ତ ଧୀର ଗମ୍ଭୀର ସ୍ୱରରେ ଏକା ନିଶ୍ୱାସକେ ଏଇ କଥାଗୁଡ଼ିକ କହିଗଲା । କଥାରେ ତାର ଏପରି ମାଦକତା ଥିଲା ଯେ, ପୁଷ୍ପ ଚିତ୍କାର ତ କଲା ନାହିଁ । ନିଜେ ଉଠି ବସି ତାକୁ ପାଖରେ ବସିବାକୁ ନିର୍ଦ୍ଦେଶ ଦେଲା ।

ଯୁବକଟି ଯାଇ ପାଖରେ ବସିଲା, ଅତି ସଂକୋଚରେ ସହିତ । ଯୁବକଟିର ଗୋଟିଏ ଆକର୍ଷଣୀୟ ଶକ୍ତି ଅଛି, ଏକଥା ପୁଷ୍ପ ଅନୁଭବ କଲା ।

ଏବେ ଉଭୟେ ଉଭୟଙ୍କ ପ୍ରତି ଆକୃଷ୍ଟ । ବାଧା ବନ୍ଧନ ନଥିଲା । ଆନନ୍ଦରେ ଉଭୟେ ଗପିବାକୁ ଆରମ୍ଭ କଲେ । ଅସରନ୍ତି ସେ ଗପ । ସେ ଗପରେ ମାଦକତା ଥିଲା । ସେମାନେ ସେଥିପାଇଁ ବିଭୋର । ଆତ୍ମ ବିସ୍ମୃତ ।

ରାତି ପାହିବାକୁ ଅଳ୍ପ ବାକି । ଉଭୟେ କ୍ଳାନ୍ତ । ଉଭୟଙ୍କ ଆଖିରେ ଆଖିଏ ନିଦ । ସେମାନେ ପୁଷ୍ପର ବିଛଣାରେ ଶୋଇ-ଗଲେ ।

ବାହାରେ ଶ୍ରୀଯୁକ୍ତ ଗୁଞ୍ଜନ । ପହରା ଦେଉଥାନ୍ତି । ଅନ୍ୟମାନଙ୍କ ନଜର ତାଙ୍କ ଉପରେ ଯେପରି ନ ପଡ଼େ, ସେଥିପାଇଁ ସେ ଯତ୍ନବାନ । ତେଣୁ ଗୋଟିଏ ଇଟା ପଛରେ ସେ ଠିଆ ହୋଇଥିଲେ ।

ଶ୍ରୀଯୁକ୍ତ ଗୁଞ୍ଜନ ଦେଖିଲେ ରାତି ପାହିବାକୁ ହେଲାଣି । ଉଦ୍ଧାମ ଓ ପୁଷ୍ପ ଗାଢ଼ ନିଦରେ ଶୋଇଯାଇଛନ୍ତି । ଉଠାଇଲେ ସେମାନେ ଉଠିବେ ନାହିଁ । ଯଦି ଉଠନ୍ତି, ଲାଭ ଅପେକ୍ଷା କ୍ଷତି ବେଶୀ ହେବ । ସେମାନେ ତ କେହି କାହାକୁ ଛାଡ଼ିବାକୁ ପ୍ରସ୍ତୁତ ହେବେ ନାହିଁ ।

ବରଂ ଆଲୋଚନାରେ ପାଟିଭୁଣ୍ଡ ହେବ । ପରିଚାରିକା ଆସି ପହଞ୍ଚିବେ । ଅଜଣା ଅଶୁଣା ଯୁବକ ରାଜକେମାଙ୍କ ଶୟନ କକ୍ଷରେ ଅପ୍ରତ୍ୟାଶିତ । ତେଣୁ ରାଜାଙ୍କୁ ଏ ଖବର ଦେବେ । ରାଜକେମାଙ୍କ ଉଆସରେ ଯୁବକର ପ୍ରବେଶ ରାଜ ସମ୍ମାନରେ ଆଞ୍ଚ ଆଣିବ । ରାଜା ଉତ୍କ୍ଷିପ୍ତ ହେବେ । ଏ ପ୍ରକାର ଅପମାନ ରାଜାଙ୍କ ପକ୍ଷେ ଅସହ୍ୟ । ଅପରିଚିତକୁ ଶୂଳ କାଠରେ ଚଢ଼ାଇବାକୁ ଆଦେଶ ହେବ ।

ସେ ହେଲା ଆଉ କଲେ ନାହିଁ । ବଛଣା ପାଖକୁ ଧାଇଁଗଲେ । ପୁଷ୍ପ ଓ ଉଦ୍ଧାମ ଶୋଇଥିବା ବଛଣାକୁ ଗୋଟିଏ ହାତରେ ଧରିଲେ । ତାପରେ ଚରାଚରିତ ଗୁଣୁ ଗୁଣୁ ଶବ୍ଦ । ସହର ବାହାରେ ରାଜାଙ୍କର ବିରାଟ ଉଦ୍ୟାନ । ସେଇ ଉଦ୍ୟାନରେ ବହୁ ଦ୍ରୁମ ଅଛି । ସେ ଯାଇ ଗୋଟିଏ ଦ୍ରୁମ ତଳେ ବଛଣାଟିକୁ ଥୋଇ ଦେଲେ । ନିଜେ ଗୋଟିଏ ବିରାଟ ଗଛ ଉପାଡ଼ି ଆଣି ତାକୁ କାନ୍ଧରେ ପକାଇ ପହରା ଦେଲେ ।

ପରଦିନ ସକାଳ । ପରିଚାରିକାମାନେ କେମାଙ୍କ ଶୟନ କକ୍ଷକୁ ଗଲେ । ସେଠି କେମାଙ୍କୁ ପାଇଲେ ନାହିଁ । କେମାଙ୍କର ବଛଣା ବି ସେଠି ନଥିଲା । ସେମାନେ ଆଶ୍ଚର୍ଯ୍ୟ ! କାନକୁ କାନ ଖବର ବ୍ୟାପିଗଲା । ମୁହୂର୍ତ୍ତେ ବି ଲାଗିଲା ନାହିଁ ।

ରାଜା ଏ ଖବର ପାଇବା ମାତ୍ରେ ବିଚଳିତ, ବିସ୍ମିତ । ରାଜକେମାଙ୍କ ଶୟନ କକ୍ଷ ଚାରିପଟେ ବିଶାଳ ପ୍ରାଚୀର । ତା'ଛଡ଼ା କଡ଼ା ପ୍ରହରା । ସମସ୍ତଙ୍କ ଅଜାଗାଚରରେ କେମା ବଛଣା ସହିତ ଅନ୍ତର୍ଦ୍ଧାନ । ସବୁ ପ୍ରହେଳିକା । ସବୁ ଅଜବ । ତଥାପି ପରିଷଦର ପରାମର୍ଶ କ୍ରମେ କୋଟୁଆଳକୁ ଆଦେଶ ହେଲା—"କେମାଙ୍କୁ ଖୋଜି ବାହାର କର ।"

ରାଜ୍ୟର କୋଟୁଆଳ କଣା । କିନ୍ତୁ ଅନୁସନ୍ଧାନରେ ସେ ପ୍ରବୀଣ ।

ଧୂରନ୍ଧର । ରାଜକେମାକୁ ଖୋଜି ବାହାର କରିବାର ଦାୟିତ୍ୱ ତାଙ୍କ ଠାରେ ନ୍ୟସ୍ତ କରାଗଲା ।

କଣ୍ଟୁଆଳ କାହା କଥାରେ ଭାସି ଯିବାର ଲୋକ ନୁହଁନ୍ତି । ତାଙ୍କ ମତରେ ରାଜକନ୍ୟାକୁ ତା'ର ବନ୍ଧୁଣୀ ସହିତ ଯେ ଅପହରଣ କରି ନେଇଛି, ସେ କେବେହେଲେ ସହରରେ ନଥିବ । ତେଣୁ ସହର ଯାକ ତନ୍ନ ତନ୍ନ କରି ଖୋଜିବା ନିରର୍ଥକ । ସେଥିପାଇଁ ସେ ଏକା ଏକା ସହରର ଉପକଣ୍ଠକୁ ବାହାରିଗଲେ ।

ସହର ଉପକଣ୍ଠରେ ରାଜାଙ୍କ ଉଦ୍ୟାନ । ସେଇ ବାଟେ ସହରରୁ ବାହାରକୁ ଯିବାକୁ ହୁଏ । କଣ୍ଟୁଆଳ ସେଇ ଉଦ୍ୟାନ ଦେଇ ଗଲାବେଳେ ଶ୍ରୀଯୁକ୍ତ ଗୁଞ୍ଜନଙ୍କ ନଜରରେ ପଡ଼ିଗଲା । କଣ୍ଟୁଆଳ ଯେ ରାଜାଙ୍କ ଝିଅ ସନ୍ଧାନରେ ଆସିଛି, ଏଥିରେ ତାଙ୍କର ସନ୍ଦେହ ନଥିଲା । ତେଣୁ ସେ ବାଟ ଓଗାଳିବା ପାଇଁ ଗୋଟିଏ ଗଛ କଣ୍ଟୁଆଳ ଆଗରେ ରଖିଦେଲେ । କଣ୍ଟୁଆଳର ବାଟ ବନ୍ଦ । କିଏ ବାଟ ଓଗାଳୁଛି, ସେ ଜାଣିପାରୁନଥାଆନ୍ତି । ତେଣୁ ସେ ବିସ୍ମିତ । ଏତିକବେଳେ ଗୁରୁ ଗମ୍ଭୀର କଣ୍ଠରେ ଶ୍ରୀଯୁକ୍ତ ଗୁଞ୍ଜନ କହିଲେ— "ଏଠି ତୋର କ'ଣ ଦରକାର ? ଏବାଟେ ତୁ କାହିଁକି ଯାଉଛୁ ।"

ଡର ଆଉ ଭୟ କଣ୍ଟୁଆଳଙ୍କ ଜାତକରେ ନାହିଁ । ତେଣୁ ସେ ନିର୍ଭୟରେ କହିଲେ—"ମୁଁ ରାଜକେମାଙ୍କ ସନ୍ଧାନରେ ଅଛି ।"

ଏକଥା ଶୁଣି ଶ୍ରୀଯୁକ୍ତ ଗୁଞ୍ଜନ ରାଗରେ ନିଆଁ । ସେ ଗର୍ଜ୍ଜନ କଲେ—"ଏ ବାଟ ବନ୍ଦ । ତୋର ଜୀବନକୁ ଯଦି ଭୟ ଅଛି, ଶୀଘ୍ର ଏଠୁ ପଳା । ନୋହିଲେ, ତୋତେ ଏ ଗଛ ମାଡ଼ରେ ଛତୁ କରିଦେବି । ଯାଉଛୁ ନା ଦେଖିବୁ ?" ଏତିକ କହିସାରି ଧରିଥିବା ଗଛରେ କଣ୍ଟୁଆଳ ଘୋଡ଼ାକୁ ସେ ପାହାରେ ଦେଲେ । ସେଇ ମାଡ଼ରେ ଘୋଡ଼ା ଗୁଞ୍ଜିଆ । ଜୀବନ ବିକଳରେ ଏକହିଗିଆ

ହୋଇ ଧାଇଁଲା । କଣ୍ଟୁଆଳଙ୍କର ନିର୍ଦ୍ଦେଶ ଦବାକୁ ବେଳନାହିଁ । ବଡ଼ବଡ଼ ଘୋଡ଼ା ପିଠିରୁ ଖସି ପଡ଼ୁଥାନ୍ତେ । ଭାଗ୍ୟକୁ ଅଳ୍ପକେ ରକ୍ଷା ପାଇଗଲେ ।

କିଛି ବାଟ ଅଣନିଶ୍ୱାସି ହୋଇ ଧାଇଁବା ପରେ, ଘୋଡ଼ାଟି ଏବେ ପ୍ରକୃତିସ୍ଥ ହେଲାଣି । ସେ ଦମ୍ ନେଉଛି । ଏସବୁ ଦେଖି କଣ୍ଟୁଆଳ ତାକୁ ରାଜାଙ୍କ ଉଆସ ଆଡ଼କୁ ଝିପଟାଇଲେ । ଘୋଡ଼ାଟି କଥାମାନି ଚାଲିଲା ଉଆସକୁ । କଣ୍ଟୁଆଳ ସିଧା ରାଜାଙ୍କ ପାଖକୁ ଯାଇ କହିଲେ—"ମହାରାଜ, ରାଜଜେମା ପୁଷ୍ପ ସହର ଉପକଣ୍ଠ ଉଦ୍ୟାନରେ ବନ୍ଦୀ । ସେଠି ଗୋଟିଏ ଗଛ ତାଙ୍କୁ ଜଗିରହିଛି । ଉଦ୍ଧାର ପାଇଁ କିଛି ସୈନ୍ୟ ତୁରନ୍ତ ପଠାଇବାର ଆଦେଶ ହେଉ ।"

ରାଜା ନିଜ କନ୍ୟା ପାଇଁ ବ୍ୟାକୁଳ । ଖବର ପାଇ ସେ ଖୁସି ହୋଇଗଲେ । କଣ୍ଟୁଆଳର ଉପଦେଶ କାର୍ଯ୍ୟକାରୀ କରାଗଲା । କିଛି ସୈନ୍ୟ ଝିଅର ଉଦ୍ଧାର ପାଇଁ ଚାଲିଗଲେ ।

ଦୂରରୁ ସେମାନଙ୍କୁ ଶ୍ରୀଯୁକ୍ତ ଗୁଞ୍ଜନ ଦେଖିନେଲେ । ଆଉ ଡେରି କଲେନାହିଁ । ସେମାନେ ଉଦ୍ୟାନ ପାଖରେ ପହଞ୍ଚିବା ମାତ୍ରେ, ସେମାନଙ୍କ ଉପରେ ଗଛରେ ମାଡ଼ ଚଢ଼ାଇଲେ । ସେମାନେ ଅତର୍କିତ ଥିଲେ । ଦିଗ୍ଭ୍ରମ୍ରେ ଗଛଟିଏ ସେମାନଙ୍କୁ ପିଟିବ, ଏକଥା ସେମାନେ କଳ୍ପନା କରିନଥିଲେ । ଗଛର ମାଡ଼ରେ ସେମାନେ ଆହତ ହୋଇ ଚିତ୍କାର କଲେ । ସେମାନଙ୍କର କରୁଣ ଚିତ୍କାର ଓ ବିଳାପରେ ସାରା ଉଦ୍ୟାନ ଥରିଉଠିଲା ।

ଗଛର ବାଡ଼େଇବା ଶବ୍ଦ ଓ ସୈନ୍ୟମାନଙ୍କର ବିକଳ କ୍ରନ୍ଦନରେ ପୁଷ୍ପ ଓ ଉଦ୍ଧାମର ନିଦ ଭାଙ୍ଗିଗଲା । ସେମାନେ ଗଛଟିର ଯୁଦ୍ଧ ଦେଖି ସ୍ତମ୍ଭୀଭୂତ । ସୈନ୍ୟମାନେ ପଳାଇବା ପରେ ଶ୍ରୀଯୁକ୍ତ

ଗୁଞ୍ଜନ ସେମାନଙ୍କ ପାଖକୁ ଆସି ସବୁ କଥା ବୁଝାଇ ଦେଲେ।

ଉଦ୍ଧାମ ଓ ପୁଷ୍ପ ସବୁ ଶୁଣିଲେ। ସେମାନେ ତ ଭୟରେ ଥରହର। ସୈନ୍ୟମାନଙ୍କର ଷଡ଼ଯନ୍ତ୍ରର ଖବର ରାଜା ପାଇ-ସାରିବେଣି। ତେଣୁ ତାଙ୍କର ସମସ୍ତ ସୈନ୍ୟ ଚାରିପଟୁ ଆକ୍ରମଣ କରିବେ। ସେଥିରୁ ରକ୍ଷା ପାଇବା କଷ୍ଟକର। ସେମାନେ ଶ୍ରୀଯୁକ୍ତ ଗୁଞ୍ଜନଙ୍କର ଉପଦେଶକୁ ଚାହିଁ ରହିଲେ।

ଶ୍ରୀଯୁକ୍ତ ଗୁଞ୍ଜନ ତାଙ୍କର ଠିକ ହାତରେ ପୁଷ୍ପ ଓ ଉଦ୍ଧାମକୁ ଧରି ଚାଲିଲେ ଏକ ଦୂର ଦୂରାନ୍ତ ରାଜ୍ୟକୁ। ସେଠି ପୁଷ୍ପ ଓ ଉଦ୍ଧାମ ନୂତନ ଜୀବନ ଆରମ୍ଭ କଲେ। ଅଭାବ ସେମାନଙ୍କର କିଛି ନଥାଏ। ସେମାନେ ଚାହିଁବା ପୂର୍ବରୁ ଶ୍ରୀଯୁକ୍ତ ଗୁଞ୍ଜନ ସବୁ ଯୋଗାଇ ଦେଉଥାନ୍ତି।

ମଉଜ ମଜଲିସ କରି ସେମାନେ ଜୀବନ ଯାପନ କରନ୍ତି। ବାହାର ଦୁନିଆରେ ଚଳିବା ଯେ କଷ୍ଟକର, ସେଇଟା ତାଙ୍କ କଳ୍ପନାର ବାହାରେ। ପୁଷ୍ପ ରାଜାଝିଅ। ଅଳିଅଳରେ ଥିଲି। ସେଠି ସେ ଅଭାବ କ'ଣ ଜାଣିନଥିଲି। ଉଦ୍ଧାମ ଶ୍ରୀଯୁକ୍ତ ଗୁଞ୍ଜନଙ୍କର ବାହୁ ଛାୟା ତଳେ ଏବେ ଅଛି। ତାଙ୍କ ଯୋଗୁ ତାର ସବୁ ଆନନ୍ଦ। ସେକଥା ସେ ଭୁଲିଗଲା। ତାର ଔଦ୍ଧତ୍ୟ ଏବେ ବଢ଼ିଛି। ଶ୍ରୀଯୁକ୍ତ ଗୁଞ୍ଜନଙ୍କ ଆକଟକୁ ସେ ଆଉ ପସନ୍ଦ କରୁନାହିଁ। ଦିନେ ସେ ଶ୍ରୀଯୁକ୍ତ ଗୁଞ୍ଜନଙ୍କୁ କହିଲା—"ଆମେ ଏଠି ଆନନ୍ଦରେ ରହି ପାରିବୁ। ତମର ଆବଶ୍ୟକତା ଏଠି ଆଉ ନାହିଁ। ତୁମ୍ଭେ ତୁମ ମାଲିକାଣୀଙ୍କ ପାଖକୁ ଯାଇପାର।"

ଶ୍ରୀଯୁକ୍ତ ଗୁଞ୍ଜନ ପ୍ରତିବାଦ କଲେ ନାହିଁ। ବରଂ କହିଲେ—"ଯୁବକମାନଙ୍କର ଆତ୍ମ ପ୍ରତ୍ୟୟ ଖୁବ୍ ବେଶୀ। କିନ୍ତୁ କାର୍ଯ୍ୟରେ ତାହା ଦେଖା ଯାଏ ନାହିଁ। ଯଦି ତୁମେ ମୋର ଆବଶ୍ୟକତା

ଉପଲବ୍ଧି କରି ପାରୁନାହଁ, ମୁଁ ଚାଲିଲି । ମୁଁ ତମମାନଙ୍କୁ ଏଇ ମୋର ଦାଢ଼ିର ବାଳଟିଏ ଦେଇ ଯାଉଛି । ଯଦି ବିପଦ ଆପଦ ଆସେ, ଏହାକୁ ନିଆଁରେ ପକାଇଦେବ । ତତ୍‌କ୍ଷଣାତ୍ ମୁଁ ଆସି ପହଞ୍ଚିବି ।" ଏତକ କହି ତାଙ୍କ ଦାଢ଼ିରୁ ବାଳଟିଏ ଛିଣ୍ଡାଇଲେ । ପୁଷ୍ପକୁ ଧରାଇ ଦେବା ମାତ୍ରେ ଶ୍ରୀଯୁକ୍ତ ଗୁଞ୍ଜନକୁ ଆଉ ଦେଖିବାକୁ ମିଳିଲା ନାହିଁ । ଅବଶ୍ୟ କେତେ ସମୟ ପର୍ଯ୍ୟନ୍ତ ଗୁଣୁ ଗୁଣୁ ଶବ୍ଦ ଶୁଣା ଯାଉଥିଲା । ଏଥର ପୁଷ୍ପ ଓ ଉଦ୍ଧାମ ସଂପୂର୍ଣ୍ଣ ସ୍ୱାଧୀନ । ସେମାନେ ଖାଲି ମଉଜ ମଜଲିସରେ ସମୟ କଟାଉଥାନ୍ତି ।

ଏଇମିତି କେତେଦିନ ଚାଲିଗଲା । ଦିନକର କଥା । ସେମାନେ ଜଙ୍ଗଲକୁ ବୁଲି ଯାଇଥାନ୍ତି । ମଝି ଜଙ୍ଗଲରେ ବାଟ ବଣା ହୋଇଗଲେ । ଏପଟ ସେପଟ ବହୁତ ହୋଇ ବି ବାଟ ପାଇଲେ ନାହିଁ । ସେତେବେଳକୁ ବେଳ ଆଖିରି । ଭୋକରେ ପେଟ ଜଳିଲାଣି । ସେମାନେ ମନେ ମନେ ଭଗବାନଙ୍କୁ ଖାଲି ଡାକୁଥାନ୍ତି । ଏତିକିବେଳେ ସେମାନେ ଜଣେ ବ୍ରାହ୍ମଣକୁ ଦେଖିଲେ ; ଛାତିରେ ତାଙ୍କର ସାହସ ପଶିଗଲା । ସେମାନେ ତା ପାଖକୁ ଯାଇ ସେମାନଙ୍କର ଦୁଃଖ କଥା କହିଲେ । ବ୍ରାହ୍ମଣଟି ସମ୍ବେଦନଶୀଳ । ସେମାନଙ୍କୁ ଅଭୟ ଦେଇ କହିଲା –"ଏଇ ଜଙ୍ଗଲରେ ମୋର ଘର । ଯଦି ଆପତ୍ତି ନଥାଏ, ମୋ ଘରକୁ ଆସନ୍ତୁ । ଖାଇ ପିଇ ଟିକିଏ ଆରାମ କରିବେ । ତାପରେ ବାଟ ଦେଖାଇ ଦେବି । ତୁମ୍ଭେମାନେ ତୁମ ଘରକୁ ଚାଲିଯିବ ।"

ମନ୍ଦ ଖୋଜୁଥିଲା ଯାହା, ବଇଦ ବତାଇଲା ତାହା । ପୁଷ୍ପ ଓ ଉଦ୍ଧାମ ପାଇଁ ଏହା ପ୍ରଯୁଜ୍ୟ । ସେମାନେ ସାଙ୍ଗେ ସାଙ୍ଗେ ବ୍ରାହ୍ମଣ ସାଥୀରେ ଯିବେ ବୋଲି ବାହାରିଲେ ।

ପ୍ରକୃତରେ ବ୍ରାହ୍ମଣଟି ଜଣେ ଛଦ୍ମବେଶୀ ରାକ୍ଷସ । ମଣିଷ ଖାଇବା ତାର ଅଭ୍ୟାସ । ଜଙ୍ଗଲରେ ପଥଭ୍ରଷ୍ଟ ସୁନ୍ଦର ଯୁବକ

ଆଉ ଯୁବତୀ ଦେଖି ତାର ପାଟିରୁ ଲାଳ ବୋହିଲା । ତାଙ୍କୁ ଡାକି ନେଇ ଘରେ ଖାଇବାର ମତଲବରେ ସେ ବ୍ରାହ୍ମଣ ବେଶ ଧରିଛି ।

ଅଳ୍ପ ସମୟ ପରେ ସେମାନେ ବ୍ରାହ୍ମଣର ଘରେ ପହଞ୍ଚିଗଲେ । ବ୍ରାହ୍ମଣ ଖୁବ୍ ଭଦ୍ର । ତାର ଆତିଥେୟତା ଚମତ୍କାର । ସେ ତାର ବ୍ୟବହାରରେ ସେମାନଙ୍କୁ କିଣିନେଲା । ସେମାନଙ୍କର ସନ୍ଦେହର ଆଉ ଅବକାଶ ନଥିଲା ।

ବ୍ରାହ୍ମଣ କହିଲା—"ଆପଣମାନେ ଧୁଆଧୋଇ ହୋଇ ଆରାମ କରୁଥାନ୍ତୁ । ରନ୍ଧା ଯଦିଓ ସରିଛି, ସେସବୁ ଥଣ୍ଡା ହୋଇଗଲାଣି । ଗରମ ଟିକିଏ ନ କଲେ, ଖାଇ ହେବ ନାହିଁ । ମୁଁ ବ୍ରାହ୍ମଣ ଲୋକ । କାହା ହାତର ରନ୍ଧା ଖାଇ ପାରିବ ନାହିଁ । ତେଣୁ ଚାକର ରଖେ ନାହିଁ । ଘରେ ଜାଳ ନାହିଁ । ମୁଁ ଦିଖଣ୍ଡ ଜାଳ ଜଙ୍ଗଲରୁ ନେଇଆସେ । ଅବଶ୍ୟ ଟିକିଏ ଡେରି ହେବ । ଉପାୟ ନାହିଁ । ମୁଁ ନଥିଲାବେଳେ ଆପଣ ଖାଲି ବସିବେ ନାହିଁ । ମୋର ଏଇସବୁ ଆଲମାରିରେ ବହୁ ଦର୍ଶନୀୟ ଜିନିଷ ସବୁ ଅଛି । ତାକୁ ଦେଖି ସମୟ କଟାଇ ଦେବେ । ବିରକ୍ତ ଲାଗିବ ନାହିଁ । କିନ୍ତୁ ହୁସିଆର, ସୁନାଚାବି ଲାଗିଥିବା ଆଲମାରି ଖୋଲିବେ ନାହିଁ । ସେଥିରେ ବିପଦ ଅଛି । ତାହା ଆପଣଙ୍କର କାଳ ହୋଇପାରେ ।" ଏତକ କହି ବ୍ରାହ୍ମଣଟି ଚାଲିଗଲା ।

ଘରେ ରହିଲେ ଉଦ୍ଦାମ ଓ ପୁଷ୍ପ । ସେମାନେ ଧୁଆଧୋଇ ହୋଇ ଆସି ବସିଲେ । ପୁଷ୍ପ ଆରାମ କରୁଥାଏ । ଉଦ୍ଦାମ ସବୁ ଆଲମାରି ଖୋଲି ଦେଖିବାରେ ବ୍ୟସ୍ତ । ଆଲମାରିରେ ଥିବା ଜିନିଷ ଅଦ୍ଭୁତ । ଅପୂର୍ବ, ଦୁଷ୍ପ୍ରାପ୍ୟ, ମୂଲ୍ୟବାନ । ସଂଗ୍ରହକାରୀକୁ ପ୍ରଶଂସା ନକରି ସେ ରହିପାରିଲା ନାହିଁ । ମନ ତ ତାର ଲାଗିଛି । ବ୍ରାହ୍ମଣର ତାଗିଦା ସେ ଭୁଲିଗଲା । ସୁନା ତାଲା ପଡ଼ିଥିବା ଆଲମାରିଟି ସେ

ଖୋଲି ଦେଲା । ଯାହା ଦେଖିଲା, ସେଥିରେ ସେ ଅବାକ । ତାର ବୁଦ୍ଧି ସବୁ ହଜିଗଲା । ପାଟିରୁ କଥା ବାହାରିଲା ନାହିଁ । ବରଡ଼ା ପତର ପରି ସେ ଥରୁଥାଏ । ଆଖିରୁ ତାର ଜୁଳୁଜୁଳିଆ ପୋକ ବାହାରି ଆସିଲା । ସେ ଚିତ୍କାର କଲା—"ଏ ବ୍ରାହ୍ମଣ ନୁହେଁ । ମଣିଷ-ଖିଆ ବ୍ରହ୍ମ ରାକ୍ଷସ ।"

ପୁଷ୍ପ ତାର ଏ ଢଙ୍ଗ ଦେଖି ତାପାଖକୁ ଦୌଡ଼ିଗଲା । ଦେଖିଲା—ଆଲମାରିରେ ବହୁତ ଖପୁରି । ଯତ୍ନରେ ସଜା ହୋଇ ରହିଛି । ସେସବୁ ପରିଷ୍କାର । ଚକ୍‌ଚକ୍ ମାରୁଛି ।

ଏସବୁ ଦେଖି ପୁଷ୍ପ ନିର୍ବେଦ । ପରମୁହୂର୍ତ୍ତରେ ସେ ଏଥିରୁ ରକ୍ଷା ପାଇବା ପାଇଁ ଉପାୟ ଚିନ୍ତା କଲା । ସେ ତ ରାଜାଘରର ଝିଅ । ଅଧୈର୍ଯ୍ୟ ନ ହେବାକୁ ସେମାନଙ୍କୁ ତାଲିମ ଦିଆ ହୋଇଥାଏ । ତେଣୁ ବ୍ୟସ୍ତ ନ ହେବା ତା ପକ୍ଷେ ସ୍ୱାଭାବିକ । ବ୍ୟସ୍ତ ନ ହେଲେ ବୁଦ୍ଧି ଆସେ । ସେ କଥା ସେ ଜାଣେ । ତେଣୁ ପୁଷ୍ପ ବ୍ରାହ୍ମଣ ଆସିବା ପର୍ଯ୍ୟନ୍ତ ଅପେକ୍ଷା କଲା । ମନେ ମନେ ସ୍ଥିର କଲା, ଯଦି ଅଘଟଣ କିଛି ଘଟେ, ତାହାହେଲେ ଶ୍ରୀଯୁକ୍ତ ଗୁଞ୍ଜନଙ୍କର ଦେଇଥିବା ବାଳ ନିଆଁରେ ପକାଇ ଦେବ । ସେଥିପାଇଁ ଆଗରୁ ସେ ଯାଇ ଚୂଲି ଲଗାଇ ଦେଲା ।

ଏଇ ସମୟରେ ବାହାରେ ଦୁମ୍ ଦୁମ୍ ଶବ୍ଦ ଶୁଭିଲା । ସେମାନେ ଦ୍ୱାର ମୁହଁକୁ ଦୌଡ଼ିଗଲେ । ଯାହା ଦେଖିଲେ, ସେମାନଙ୍କର ପିଳେଇ ପାଣି । ସେପଟୁ ଏକ ବିରାଟ ରାକ୍ଷସ ଆସୁଛି । ଚେହେରା ତାର ବିକଟାଳ ! ଦାନ୍ତଗୁଡ଼ିକ ଖୁବ୍ ବଡ଼, ତୀକ୍ଷ୍ଣ । ପଦାକୁ ବାହାରି ଆସିଛି । ଆଖି ଦୁଇଟା ଭୟଙ୍କର । ଖୁବ୍ ବଡ଼ ବଡ଼ । ଢହୁଡ଼ ପରି ଜଳୁଥାଏ । ଉଦ୍ଧାମ ଏ ଦୃଶ୍ୟ ସହି ପାରିଲା ନାହିଁ । ତାର ଚେତା ବୁଡ଼ିଗଲା । କିନ୍ତୁ ପୁଷ୍ପ ! ଧୈର୍ଯ୍ୟ ନ ହରାଇ

ଧାଇଁଲା ଚୂଲି ପାଖକୁ । ଶ୍ରୀଯୁକ୍ତ ଗୁଞ୍ଜନଙ୍କ ବାଳ ନିଆଁରେ ପକାଇ ଦେଲା । ବାଳରେ ନିଆଁ ଲାଗିବା ମାତ୍ରେ ଗୁଣୁଗୁଣୁ ଶବ୍ଦର ଆବାଜ ଶୁଣାଗଲା । ଏ ଶବ୍ଦ ଶୁଣି ରାକ୍ଷସ ବିବ୍ରତ । ହଠାତ୍ ଅଦୃଶ୍ୟ ହୋଇଗଲା । ତାପରେ ହେଲା ବର୍ଷା । କି ଭୟଙ୍କର ସେ ବର୍ଷା । ଆକାଶରୁ ଧାର ଧାର ହୋଇ ଖାଲି ପାଣି ବୋହି ପଡୁଥିଲା । ଶ୍ରୀଯୁକ୍ତ ଗୁଞ୍ଜନଙ୍କୁ ପହଞ୍ଚାଇ ନ ଦେବାକୁ ରାକ୍ଷସର ଏ ଚକ୍ରାନ୍ତ । ଶ୍ରୀଯୁକ୍ତ ଗୁଞ୍ଜନ ଛାଡ଼ିବାର ପାତ୍ର ନୁହନ୍ତି । ସେ ନିଜେ ତୋଫାନ ହୋଇଗଲେ । କି ଭୟଙ୍କର ସେ ପବନର ଗତି । ଗଛ ଉପୁଡ଼ି ପଡ଼ିଲା । ଘରଦ୍ୱାର ଆକାଶରେ ଉଡ଼ିଲା । ମେଘ ତ ଦୂରର କଥା । ଏବେ ଆକାଶ ନିର୍ମଳ । ରାକ୍ଷସ ଏଥର ଉପାୟହୀନ । ନିଜକୁ ବଞ୍ଚାଇବା ପାଇଁ ସେ କପୋତ ହୋଇ ଉଡ଼ିଗଲା । ଶ୍ରୀଯୁକ୍ତ ଗୁଞ୍ଜନ ଏବେ ବାଜପକ୍ଷୀ । କପୋତର ପିଛା ଧରିଛନ୍ତି ।

କପୋତଟି ଆଶ୍ରୟ ପାଇଁ ସାରା ଦୁନିଆ ବୁଲିଲା । କେଉଁଠି ହେଲେ ଜୀବନ ରକ୍ଷିବାର ବ୍ୟବସ୍ଥା କରିପାରିଲା ନାହିଁ । ଶେଷକୁ ସେ ଇନ୍ଦ୍ର ପୁରୀକୁ ଚାଲି । ସେତେବେଳେ ଅପ୍ସରାମାନେ ନୃତ୍ୟରେ ବ୍ୟସ୍ତ । ଇନ୍ଦ୍ର ଓ ଅନ୍ୟ ଦେବତାମାନେ ନୃତ୍ୟ ଦେଖି ବିଭୋର, ତନ୍ମୟ । ଏଇ ମଉକାରେ ରାକ୍ଷସଟି ଗୋଲାପଫୁଲ ହୋଇ ଇନ୍ଦ୍ରଙ୍କ କୋଳରେ ପଡ଼ିଗଲା । ଇନ୍ଦ୍ର ଏତେ ବିହ୍ୱଳ ହୋଇ ଯାଇଥିଲେ ଯେ, ରାକ୍ଷସଟି ଫୁଲ ହୋଇ ପଡ଼ିଗଲା, ଅଥଚ ସେ କଥା ସେ ଜାଣିପାରିଲେ ନାହିଁ ।

ଶ୍ରୀଯୁକ୍ତ ଗୁଞ୍ଜନ ଏକ ବୃଦ୍ଧ ଗାୟକ ବେଶରେ ସେଠି ହାଜର । ତାନପୁରା ବାଦକ ପାଖରେ ସେ ବସିପଡ଼ିଲେ । ସେତେବେଳେକୁ ତାନପୁରା ବାଦକ କ୍ଳାନ୍ତ । ସାହାଯ୍ୟ ସେ ଲୋଡୁଥିଲା । ଏହାର ସୁବିଧା ନେଇ ଶ୍ରୀଯୁକ୍ତ ଗୁଞ୍ଜନ ତାକୁ କହିଲେ—"ତୁମେ ତ ହାଲିଆ

ହୋଇଗଲଣି । ମୋତେ ତାନପୁରା ଦିଅ । ମୁଁ ବଜାଏ, ତୁମେ ଦମ୍ ନିଅ ।”

ତାନପୁରା ବାଦକ ଏ ପ୍ରସ୍ତାବରେ ଖୁବ୍ ଖୁସି । ତାନପୁରାଟି ବଢ଼ାଇଦେଲା । ଶ୍ରୀଯୁକ୍ତ ଗୁଞ୍ଜନ ତାନପୁରା ବଜାଇ ଗୀତ ଗାଇଲେ । କି ମଧୁର ସେ ସ୍ୱର ! କି ଲଳିତ ସେ କଣ୍ଠ । ମୂର୍ଚ୍ଛନା ତାର ହୃଦୟ ସ୍ପର୍ଶୀ । ତାନପୁରା ବାଦ୍ୟ ତା ସାଥିରେ ତାଳେ ତାଳେ ଗୁଞ୍ଜୁଛି । ଅଭିନବ । ଅପୂର୍ବ ସମାହାର । ଦେବତାଗଣ ଶତମୁଖରେ ଏହାର ପ୍ରଶଂସା କଲେ । ଇନ୍ଦ୍ର ସ୍ତମ୍ଭୀଭୂତ । ଆତ୍ମହରା । ବର ମାଗିବାକୁ ତାନପୁରା ବାଦକଙ୍କୁ ନିର୍ଦ୍ଦେଶ ଦେଲେ ।

ବୃଦ୍ଧ ଗାୟକ ଆସନ ଛାଡ଼ି ଠିଆହେଲେ । କୃତଜ୍ଞତାରେ ସେ ନତ ମସ୍ତକ । ସେ ଅତି ବିନମ୍ର କଣ୍ଠରେ କହିଲେ—“ଆପଣଙ୍କର ପ୍ରଶଂସାରେ ମୋର ଜୀବନ ସାର୍ଥକ ହେଲା । ଦୟା ଯଦି କରିବାକୁ ଚାହୁଁଛନ୍ତି, ତେବେ ଆପଣଙ୍କ କୋଳରେ ଥିବା ଗୋଲାପ ଫୁଲଟି ପ୍ରତି ମୋର ଶ୍ରଦ୍ଧା ବହୁତ । ତାହା ମିଳିବାକୁ ହୁକୁମ ହେଉ ।”

ଇନ୍ଦ୍ରଙ୍କ ମୁହଁରେ ହସ । ସେ କହିଲେ “ତୁମର ନିବେଦନ ଅତି ତୁଚ୍ଛ ଓ ନଗଣ୍ୟ । ମୁଁ ତୁମକୁ ବର ଦେବାକୁ ରାଜି । ଅଭୟ ଦେଲି, ବରମାଗ ।”

ଶ୍ରୀଯୁକ୍ତ ଗୁଞ୍ଜନ ନମ୍ରତାରେ ଆତୁର ନଇଁପଡ଼ି କହିଲେ “ଆଜ୍ଞା ! ସେଇ ଗୋଲାପ ଫୁଲଟି ପ୍ରତି ମୋର ଘାରି ଲୋଭ । ଦୟାହେଉ ।”

ଇନ୍ଦ୍ର କହିଲେ “ତଥାସ୍ତୁ ।” ନିଜ ହାତରେ କୋଳରୁ ଗୋଲାପ ଫୁଲଟି ଉଠାଇଆଣି ଶ୍ରୀଯୁକ୍ତ ଗୁଞ୍ଜନ ଉପରକୁ ଫିଙ୍ଗିଦେଲେ । କିନ୍ତୁ ଗୋଲାପ ଫୁଲଟି ଗାୟକ ଆଡ଼କୁ ଗଲାନାହିଁ । ତାର ପାଖୁଡ଼ା

ସବୁ ଘରଯାକ ଝଡ଼ୁଛ ହୋଇ ପଡ଼ିଲା । ଶ୍ରୀଯୁକ୍ତ ଗୁଞ୍ଜନ ନଇଁପଡ଼ି ପାଖୁଡ଼ା ସଂଗ୍ରହ କରିବା ମାତ୍ରେ ଫୁଲର କେଶରଟି ମୂଷା ହୋଇ ପଳାଇଲା ।

ଶ୍ରୀଯୁକ୍ତ ଗୁଞ୍ଜନ ଏକ ବିରାଡ଼ି ପାଲଟି ମୂଷା ପଛେ ପଛେ ଧାଇଁଲେ । ଏଥର ମୂଷାଟିର ଆଉ ରକ୍ଷାନାହିଁ । ଶ୍ରୀଯୁକ୍ତ ଗୁଞ୍ଜନ ବିରାଡ଼ି ବେଶରେ ତାକୁ ମାଡ଼ିବସି ମୂଷାଟିକୁ ମାରି ପକାଇଲେ ।

ଏଣେ ପୁଷ୍ପ ଓ ଉଦ୍ଦାମ ଉପୁରେ କାକୁସ୍ଥ । ପ୍ରତିମୁହୂର୍ତ୍ତରେ ସେମାନେ ପ୍ରମାଦ ଗଣୁଥାଆନ୍ତି । ହଠାତ୍ ପରିଚିତ ଗୁଣୁଗୁଣୁ ଶବ୍ଦ ସେମାନେ ଶୁଣିପାରିଲେ । ଏ ଶବ୍ଦ ଶୁଣି ସେମାନେ ଆଶ୍ୱସ୍ତ । ମୁହୂର୍ତ୍ତକ ମଧ୍ୟରେ ଶ୍ରୀଯୁକ୍ତ ଗୁଞ୍ଜନଙ୍କର ସେଠି ଆବିର୍ଭାବ । ତାଙ୍କୁ ଦେଖି ପୁଷ୍ପ ଓ ଉଦ୍ଦାମ ଆନନ୍ଦରେ ନାଚିଉଠିଲେ ।

ଯୁଦ୍ଧ ବିଜୟୀ ଶ୍ରୀଯୁକ୍ତ ଗୁଞ୍ଜନ ଧୀର ଓ ଗମ୍ଭୀର ଭାବରେ କହିଲେ "ମୁଁ ଯାହା ଦେଖୁଛି ତୁମ୍ଭେ ଦୁହେଁ ତୁମ୍ଭମାନଙ୍କର ତତ୍ତ୍ୱନେବାରେ ଅପାରଗ । ଚାଲ, ତମମାନଙ୍କୁ ନେଇ ମୁଁ ତମ ଘରେ ଛାଡ଼ିଦେଇ ଆସେ ।"

ଶ୍ରୀଯୁକ୍ତ ଗୁଞ୍ଜନ ଟିକଏ ବି ଡେରି କଲେ ନାହିଁ । ଗୋଟିଏ ହାତରେ ରାକ୍ଷସର ଗଚ୍ଛିତ ଧନ ଦୌଲତ ଓ ଆର ହାତରେ ପୁଷ୍ପ ଓ ଉଦ୍ଦାମଙ୍କୁ ଧରି ସେ ଆକାଶକୁ ଉଠିଗଲେ । କିଛି ସମୟ ଭିତରେ ସେମାନେ ଉଜ୍ଜ୍ୱାଟରର ଘରେ ପହଞ୍ଚିଲେ । ବିଚାରୀ ନୟନତାରା ପୁଅର ଫେରିବା ବାଟକୁ ଚାହିଁ ରହିଥାଏ । ଦୁଆର ଖଡ଼ ଖଡ଼ ହେଲେ ପୁଅ ଆସିଛି ବୋଲି ଧାଇଁଯାଏ । କେତେ ଯେ ହତାଶାର ନିଶ୍ୱାସ ଛାଡ଼ୁଛି ତାର ସୀମା ନାହିଁ । ଅପ୍ରତ୍ୟାଶିତ ଭାବରେ ପୁଅବୋହୂଙ୍କୁ ଦେଖି ବୁଢ଼ୀ ଭାରି ଖୁସି । ଆନନ୍ଦରେ ତା ଆଖିରୁ ଲୁହ ଧାର ଧାର ହୋଇ ବୋହିଗଲା ।

ଶ୍ରୀଯୁକ୍ତ ଗୁଞ୍ଜନ ସବୁ ଧନଦୌଲତ ବୁଢ଼ୀ ଜମା କରିଦେଲେ । ଉଦ୍ଧାମ ଓ ପୁଷ୍ପ ମାଙ୍କୁ ପ୍ରଣାମ କଲେ । ଉଦ୍ଧାମ କହିଲା "ମା'ଲୋ, ଏସବୁ ଶ୍ରୀଯୁକ୍ତ ଗୁଞ୍ଜନଙ୍କର କରାମତି । ତାଙ୍କର ଯୋଗୁ ମୁଁ ବଞ୍ଚିକରି ଫେରିଲି । ତାଙ୍କରିପାଇଁ ମୋର ଭାଗ୍ୟର ପରିବର୍ତ୍ତନ ବି ହୋଇଛି ।"

ନୟନତାରା ଶ୍ରୀଯୁକ୍ତ ଗୁଞ୍ଜନଙ୍କୁ କୃତଜ୍ଞତା ଜଣାଇବା ପୂର୍ବରୁ ସେ ଉଭେଇ ଯାଇଥିଲେ ।

ବୁଢ଼ୀ ପୁଅ ବୋହୂଙ୍କୁ ନେଇ ଆନନ୍ଦରେ ଘରସଂସାର କଲା ।



# ବଶ୍ୟସ୍ତ ରାଜକୁମାର

ବହୁଦିନ ତଳେ ଜଣେ ରାଜା ଥିଲେ । ଯୁବରାଜ ବ୍ରାହ୍ମଦଗୋର ତାଙ୍କର ଏକମାତ୍ର ସନ୍ତାନ । ସେ ମଧ୍ୟ ଚାନ୍ଦର ଜହ୍ନପରି ସୁନ୍ଦର । ମଧ୍ୟାହ୍ନର ସୂର୍ଯ୍ୟପରି ତେଜସ୍ୱାନ ।

ତାଙ୍କ ରାଇଜଟା ଜଙ୍ଗଲରେ ପୂର୍ଣ୍ଣ । ଶିକାର ହାଉ୍ ଡାଉ୍ । ଯୁବରାଜ ବି ଶିକାର ପ୍ରିୟ ।

ଥରେ ଯୁବରାଜ ଶିକାରକୁ ବାହାରିଲେ । ସାଥୀରେ ବହୁ ବଛାବଛା ଶିକାରୀ । ସେମାନେ ପ୍ରଥମେ ଉତ୍ତରକୁ ଗଲେ । ଆଶ୍ଚର୍ଯ୍ୟ, ଶିକାରଟିଏ ବି ମିଳିଲା ନାହିଁ । ଉପାୟ ନଥିଲା, ତେଣୁ ଦିଗ ପରିବର୍ତ୍ତନ କରି ପୂର୍ବକୁ ଗଲେ । ସେ ଦିଗରେ ବି ଅବସ୍ଥା ସେଇଆ ।

ଖାଲି ହାତରେ ଶିକାରରୁ ଫେରିବା ଏକ ଲଜ୍ଜାକର କଥା । ଏହାତ ଶିକାରୀମାନଙ୍କର ମୁଣ୍ଡରେ ସବୁବେଳେ ଥାଏ । ରାଜାପୁଅଙ୍କୁ

ସମସ୍ତ ଶିକାରୀମାନେ ପ୍ରବର୍ତ୍ତାଇଲେ ଯେ ବନ୍ୟ ଶିକାରରେ ଫେରିବା ଉଚିତ ହେବନାହିଁ । ତେଣୁ ଯୁବରାଜ ପୁଣି ଦକ୍ଷିଣକୁ ଗଲେ । ସେ ବାଗରେ ବି ଅବସ୍ଥାର ପରିବର୍ତ୍ତନ ହେଲନାହିଁ । ବାଧହୋଇ ଶେଷ ଚେଷ୍ଟା ପାଇଁ ସେମାନେ ପଶ୍ଚିମକୁ ଗଲେ । ସେତେ-ବେଳକୁ ବେଳ ଆଖର । ଡାହାଣିଆ ଖରା ସିଧା ମୁହଁରେ ପଡୁଥାଏ । ରାଜପୁତ୍ର ତ ସୁନ୍ଦର । ଡାହାଣିଆ ଖରା ପଡ଼ି ସେ ଆହୁରି ସୁନ୍ଦର ଦେଖାଯାଉଥାଆନ୍ତି ।

କେଉଁଠି ଥିଲା କେଜାଣି, ହଠାତ୍ ହରିଣଟିଏ ଆଗ ବୁଦାରୁ ବାହାରି ଆସି ସେମାନଙ୍କ ସମ୍ମୁଖରେ ଠିଆହେଲା । ହରିଣଟି ଦେଖିବାକୁ ଅପୂର୍ବ । ତାର ଖୁରା, ଗୋଡ଼ ଓ ଶିଙ୍ଘ ନଗଦ ପାଲିସ ସୁନାପରି ଝଟକୁ ଥାଏ । ଦେହର ଅବଶିଷ୍ଟ ଅଂଶ ସତେକି ଆଉଟା ସୁନାରେ ତିଆରି ।

ତ୍ରାହାମ୍‌ଗୋର ଓ ତାଙ୍କ ସାଥୀ ଶିକାରୀମାନେ ହରିଣଟିକୁ ଦେଖି ମୁଗ୍ଧ । ତାକୁ ଶିକାର କରିବା କଥା ଆପେ ଆପେ ତାଙ୍କ ମନରୁ ଉଭେଇ ଗଲାଣି । ସମସ୍ତେ ତାକୁ ଧରିବାକୁ ତତ୍ପର । ଏତିକିବେଳେ ସେମାନଙ୍କର ମନ ଜାଣିଲା ଭଳି ଯୁବରାଜ ଆଦେଶ ଦେଲେ "ସୁନାର ହରିଣ ଶିକାର ଯୋଗ୍ୟ ନୁହଁ । ଏହାକୁ ଧରି ନେବାକୁ ହେବ । ଚାରିପଟେ ଖେଦି ଯାଅ । ଧରିବାକୁ ଚେଷ୍ଟା କର । ଯେ ଧରିବ, ରାଜ ପୁରସ୍କାର ପାଇବ । ଯେ ନ ଧରିପାରି ଛାଡ଼ିଦେବ, ବା ଯାହା ପାଖଦେଇ ହରିଣଟି ପଳାଇବ ସେ ରାଜଦଣ୍ଡ ପାଇବ ।" ବଡ଼ ପାଟିରେ କହିଲେ, ହରିଣଟି ହୁରୁଡ଼ି ପଳାଇବ । ଏଥିପାଇଁ ରାଜପୁତ୍ର ଆସ୍ତେ ଆସ୍ତେ କରି ଏକଥା କହିଲେ । କିନ୍ତୁ ଏ ଆଦେଶ ମୁହୂର୍ତ୍ତକ ଭିତରେ ଗୁଣ୍ଡିକୁ ଗୁଣ୍ଡି ବ୍ୟାପି ଯାଇଥିଲା । ଶିକାରୀମାନେ ତ ହରିଣକୁ ଧରିବାକୁ ବ୍ୟଗ୍ର-

ଥିଲେ । ଯେମିତି ଏ ଆଦେଶ ପାଇଛନ୍ତି, ସେମାନେ ହରିଣର ପଛରେ ଗୋଡ଼ାଇ ଚାଲିଲେ ।

ହରିଣଟି ବର୍ତ୍ତମାନ ମଝିରେ । ପଛରେ ଶିକାରି ବୃନ୍ଦ । ସେମାନେ ଧୀରେ ଧୀରେ ତା ଆଡ଼କୁ ଅଗ୍ରସର ହେଉଥାନ୍ତି । ହରିଣଟି ଠିଆ ହୋଇଥାଏ, ସ୍ଥାଣୁ ଭଳି । ସତେକି ତାର ଶିକାରି-ମାନଙ୍କ ପ୍ରତି ଭ୍ରୂକ୍ଷେପ ନାହିଁ । ସେ ନିର୍ବିକାର । ପରିବେଶ ପ୍ରତି ସେ ବୀତସ୍ପୃହ ।

ଶିକାରୀମାନେ ଏବେ ହରିଣର ଖୁବ୍ ପାଖରେ । ଖାଲି ଯାହା ଧରିବାର କଥା । ଏତିକିବେଳେ ସେ ଡିଆଁ ମାରିଲା । ସତେ କି ସେ ବିଜୁଳି । ଆଖି ପିଛୁଳାକେ ସେ ରାଜକୁମାରଙ୍କ ପାଖଦେଇ ଚମ୍ପଟ ।

ଯୁବରାଜ ମହା ଖୁସିଆର । ଘୋଡ଼ା ତାଙ୍କର ଚତୁର । ତାଲିମ-ପ୍ରାପ୍ତ । ଯୁବରାଜଙ୍କ ଇସାରାରେ ଘୋଡ଼ାଟି ହରିଣର ପିଛା ଧରିଲା । ଘୋର ଜଙ୍ଗଲ ଭିତରେ ହରିଣ ଛୁଟିଥାଏ । ପଛେ ପଛେ ଯୁବରାଜଙ୍କ ଘୋଡ଼ା । ତା ଉପରେ ଯୁବରାଜ । କାହାର ଗତି କମ୍ ନୁହେଁ । କେତେବାଟ ଆସିଲେଣି, କହି କେହି ପାରିବେ ନାହିଁ । ଦୌଡ଼ି ଦୌଡ଼ି ହରିଣଟି କ୍ଳାନ୍ତ । ଆଉ ଆଗେଇ ପାରୁନାହିଁ । ଘୋଡ଼ାଟି ହରିଣର ଖୁବ୍ ପାଖାପାଖି । ରାଜକୁମାର ଘୋଡ଼ା ପିଠିରୁ ଡେଇଁ-ପଡ଼ି ହରିଣର ଶିଙ୍ଘକୁ ଧରିନେଲେ । ସୁନା ହରିଣଟି କାବୁ ହୋଇ-ଗଲା । ସେ ଏଥର ନିରୁପାୟ । ରାଜକୁମାରଙ୍କର ହାତରେ ସଂପୂର୍ଣ୍ଣ ଭାବରେ କବଳିତ ।

ହରିଣ ମୁହଁରେ ମଣିଷର ଭାଷା । ସେ ଅନୁନୟ ବିନୟ ହୋଇ କହିଲା "ମୁଁ ଶିକାର ଯୋଗ୍ୟ । ମାରି ମାଉଁସ କରି ଖାଇଦେଲେ କଥା ଶେଷ । ସେ ମାଂସର ମୂଲ୍ୟ କେତେ ବା ହେବ ? ମୋତେ

ଦଯ଼ାକର ଛାଡ଼ିଦିଅନ୍ତୁ । ମୋ ବଦଳରେ ମୁଁ ଆପଣଙ୍କୁ ଅଜସ୍ର ଧନ ଦେବି ।"

ଯୁବରାଜଙ୍କ ମୁହଁରେ ତାଚ୍ଛଲ୍ୟର ହସ । ସେ କହିଲେ—"ଆମ ଘରାଘର ଅସରନ୍ତି ରତ୍ନର ଭଣ୍ଡାର । ତୋଠାରୁ ଅଜସ୍ର ଧନ ନେଇ କ'ଣ ବା କରିବି ? ବରଂ ଆମର ସୁନାର ହରିଣ ନାହିଁ । ତୋତେ ନେଲେ, ଲୋକେ ଦେଖିବେ । ବହୁତ ପ୍ରଶଂସା ମିଳିବ ।"

ହରିଣଟି ଅଧୀର ହୋଇପଡ଼ିଲା । ସେ କାକୁତି ମିନତି ହୋଇ କହିଲା—"ଯୁବରାଜ । ମୋତେ ଦଯ଼ାକରି ଛାଡ଼ିଦିଅନ୍ତୁ। ମୁଁ ଯାହା ଦେବି, ତାହା ଧନଦୌଲତଠାରୁ ବହୁ ମୂଲ୍ୟବାନ । କୌଣସି ପ୍ରାର୍ଥୀବି ମଣିଷ ପକ୍ଷେ ତାହା ଦୁର୍ଲ୍ଲଭ ।"

ଯୁବରାଜ ଏବେ ତାହା ଜାଣିବାକୁ ଉତ୍ସୁକ । ତେଣୁ ସେ ପଚାରିଲେ—"ତୁମେ ତାହାହେଲେ କ'ଣ ଦେବ ?"

ହରିଣଟି ଦେଖିଲା, ରାଜକୁମାର ତା କଥା ଶୁଣିବାକୁ ଆଗ୍ରହୀ । ତେଣୁ ସେ ଗମ୍ଭୀର ଭାବରେ ଉତ୍ତର ଦେଲା—"ଯୁବରାଜ ! ବିଶ୍ୱ ପରିକ୍ରମା ଏ ପର୍ଯ୍ୟନ୍ତ କୌଣସି ମଣିଷ ପକ୍ଷେ ସମ୍ଭବପର ହୋଇ-ନାହିଁ । ମୋ ପିଠିରେ ବସନ୍ତୁ । ମୁଁ ଆପଣଙ୍କୁ ସାରା ବିଶ୍ୱ ବୁଲାଇ ଆଣିବି ।" ଯୁବରାଜ ଏକଥା ଶୁଣି ଭାରି ଖୁସି । ମନ ତାଙ୍କର କୁରୁଳି ଉଠିଲା । ସେ ରାଜିହୋଇ ଜଣାଇଦେଲେ ।

ହରିଣର ଇଙ୍ଗିତରେ ରାଜକୁମାର ଆସ୍ତେକରେ ତା ପିଠିରେ ବସି ପଡ଼ିଲେ ।

ବଣ ବୁଦାରୁ ଚଢ଼େଇ ଉଡ଼ିଉଡ଼ି ପଦାକୁ ଆସେ । ସେତେବେଳେ ଗତି ତାର ଧୀର, ମନ୍ଥର । କିନ୍ତୁ ସେତେବେଳେ ସେ ଥରେ ଉଡ଼ିବାକୁ ଆରମ୍ଭ କରେ, ଆକାଶରେ ମିଶିବାକୁ ତାକୁ ଅଳ୍ପ ସମୟ ଲାଗେ । ଠିକ୍ ସେଇପରି ହରିଣଟି ଅଳ୍ପ ସମୟ

ଦୌଡ଼ିଲା । ତାପରେ ଚଢ଼େଇ ପରି ଉଡ଼ି ଉଡ଼ି ଆକାଶରେ ମିଶିଗଲା । ଟିକିଏ ବି ବିଶ୍ରାମ ନେଇନାହିଁ । ଅବିରାମ ତାର ଗତି । ସେ ଉଡ଼ୁଥାଏ । ସାତରାତି ସାତଦିନ ବିତିଗଲା । ପିଠିରେ ତାର ବ୍ରାହାମଗୋର । ତଳେ ରହିଯାଉଥାଏ ପୃଥିବୀର ବିଭିନ୍ନ ଅଂଶ—ନଈ, ନାଳ, ପାହାଡ଼, ପର୍ବତ, ସହର, ମଫସଲ । ରାଜପୁତ୍ରଙ୍କୁ ଲାଗୁଥାଏ—ସତେ ଯେମିତି ସେ ଚଳଚିତ୍ରର ଦୃଶ୍ୟ ଦେଖୁଛନ୍ତି । ସେ ସବୁ ଦେଖି ସେ ଆନନ୍ଦ, ତନ୍ମୟ । ଭୋକ ଶୋଷ କଥା ବି ଭୁଲିଗଲେ ।

ସପ୍ତମ ଦିନର ସନ୍ଧ୍ୟା । ହରିଣଟି ପୃଥିବୀ ପୃଷ୍ଠକୁ ଫେରି ଆସିଲା । ଭୂଇଁରେ ପାଦ ଦେଉ ଦେଉ ସେ କୁଆଡ଼େ ଉଭେଇଗଲା । ବ୍ରାହାମଗୋର ଏବେ ଏକୁଟିଆ । ସେଥିରେ ତାଙ୍କର ଛନିଆ ହେବାର ନଥିଲା । କିନ୍ତୁ ସେ ଯାହା ଦେଖିଲେ, ତାକୁ ସେ ବିଶ୍ୱାସ କରି ପାରୁନଥିଲେ । ନିଜ ଆଖିକୁ ସନ୍ଦେହ ହେଲା । ବାରମ୍ବାର ଆଖି ମଳି ଚାହିଁଲେ । ସେ ପୁଣି ସେଇଆ ଦେଖିଲେ । ସେ ଏବେ ବୁଝିଲେ ଯେ, ସେ ଏକ ଅଭିନବ ଆଉ ଅପୂର୍ବ ରାଜ୍ୟରେ ପହଞ୍ଚି-ଯାଇଛନ୍ତି । ସେଠି ସବୁ ନୂଆ । ସବୁ ଅପରିଚିତ । ମଣିଷ, ଜୀବ-ଜନ୍ତୁ ମଧ୍ୟ ଦେଖିବାକୁ ସ୍ୱପ୍ନ । ସାହସ କରି ସେ ଚାରିଆଡ଼ ବୁଲିଲେ । କିନ୍ତୁ କୌଣସି ଥଳକୂଳ ପାଇଲେ ନାହିଁ । ସେ ଏଥର ବିସ୍ମିତ । କିଂକର୍ତ୍ତବ୍ୟ ବିମୂଢ଼ । ଏତିକିବେଳେ ତାଙ୍କ ପାଦ ପାଖରେ ମାଟି ଫାଟିଗଲା । ତା ଭିତରୁ ବାହାରି ଆସିଲା—ବୁଢ଼ା ମଣିଷଟିଏ !

ଯାହାହେଉ' ମଣିଷଟିକୁ ଦେଖି ବ୍ରାହାମଗୋରଙ୍କ ସାହସ ଆସିଲା । ସେ ବୁଢ଼ାକୁ ଖାଲି ଚାହିଁ ରହିଲେ ।

ବୁଢ଼ାଟି ଭଦ୍ର । ସେ ବ୍ରାହାମଗୋରଙ୍କୁ ଅତି ସ୍ନେହରେ ପଚାରିଲା—"ଏଠାକୁ କିପରି ଆସିଲ ? ଏଠାରେ କାହାକୁ

ଖୋଜୁଛ ?"

ବ୍ରାହ୍ମମଗୋରଙ୍କର ସଙ୍କୋଚ କିଛି ନଥିଲା । ବରଂ ନିଜ ଲୋକ ବୋଲି ଭାବି ସେ ଶିକାରକୁ ବାହାରିବା ବେଳଠାରୁ ଏଠାରେ ପହଞ୍ଚିବା ଘଟଣାବଳି ଡଡ଼ ଗଡ଼ କରି ଗାଇଗଲେ ।

ବୁଢ଼ାଟି ସବୁକଥା ଶୁଣିସାରି କହିଲା—"ଏଇଟି ଅସୁର ରାଜ୍ୟ । ମଣିଷପାଇଁ ବିପଦର ସ୍ଥାନ । କିନ୍ତୁ, ତମର ବ୍ୟସ୍ତ ହେବାର କାରଣ ନାହିଁ । ମୁଁ ହେଉଛି ରାଜା ଜାସଦ୍ରୁଲ୍ । ସୁନାର ହରିଣ ହୋଇ ମୁଁ ପୃଥିବୀରେ ବିଚରଣ କରୁଥିଲି । ସେତିକିବେଳେ ତୁମେ ମୋତେ ଧରିନେଲ । ଯାହାହେଉ, ମୋ କଥା ରଖି ମୋତେ ମାରିଲନାହିଁ । ଛାଡ଼ିଦେଲ । ତମ ଯୋଗୁ ମୋର ପ୍ରାଣ ରହିଲା । ମୋ ପାଖରେ ରହିଲେ, ତମର କିଛି ଅସୁବିଧା ହେବନାହିଁ । ସମସ୍ତ ପ୍ରକାର ତତ୍ତ୍ୱ ମୁଁ ନେବି । ଆସ, ମୋ ଘରକୁ ଯିବା ।"

ବ୍ରାହ୍ମମଗୋର ଯେଉଁ ପରିସ୍ଥିତିରେ ପଡ଼ିଥିଲେ, ସେ ଅବସ୍ଥାରେ ତାଙ୍କ ପକ୍ଷେ ନାହିଁ କରିବା ଜମା ସମ୍ଭବ ନଥିଲା । ସେ ଅଗତ୍ୟା ତାଙ୍କ ସାଥିରେ ବାହାରିଲେ । ଘରେ ଜାସଦ୍ରୁଲ୍ ବ୍ରାହ୍ମମଗୋରଙ୍କୁ ଖୁବ୍ ସମ୍ମାନ ଦେଲେ ।

ରାଜା ଜାସଦ୍ରୁଲଙ୍କ ଆତିଥ୍ୟ ରାଜକୀୟ । ଅଭିନବ । ବ୍ରାହ୍ମମଗୋର ଖାଲି ସନ୍ତୁଷ୍ଟ ନୁହନ୍ତି, ମୁଗ୍ଧ ବି । ରାଜା ଜାସଦ୍ରୁଲ୍ କହିଲେ—"ମୋର ଶହେଟି ଉଆସ ଅଛି । ତାର ଚାବି ତମ ଜିମା ରହିଲା । ବସି ରହିଲେ ବିରକ୍ତ ଲାଗିବ । ଯେତେବେଳେ କାମ ନଥିବ, ଉଆସ ଆଡ଼େ ବୁଲି ଆସିବ । ସବୁ ଉଆସରେ ବହୁ ମୂଲ୍ୟବାନ ଦୁଷ୍ପ୍ରାପ୍ୟ ଜିନିଷଅଛି । ଯଦି ଭଲ ଲାଗିବ, ସେସବୁ ଘେନି ଆସିବ । ତୁମେ ତାକୁ ସାଥିରେ ବି ନେଇଯିବ ।" ଏତିକି କହି ଶହେଟି ଚାବି ଦେଇ ରାଜା ଜାସଦ୍ରୁଲ୍ ସେଠୁ ଚାଲିଗଲେ ।

ପ୍ରାତଃ ଭୋଜନ ପରେ ବ୍ରାହ୍ମଣଠାକୁରଙ୍କର କିଛି କାମ ନଥିଲା । ତେଣୁ ପ୍ରତିଦିନ ସେ ରାଜା ଜୟଦ୍ରୁଲ୍‌ଙ୍କ ଉଆସ ବୁଲି ସବୁ ଦେଖନ୍ତି । ପ୍ରଥମ ଉଆସଟିର ପ୍ରତ୍ୟେକ ବଖରା ସୁନାରେ ପୂର୍ଣ୍ଣ । ଦ୍ୱିତୀୟ ଉଆସଟି ମଣିମୁକ୍ତାରେ ଭରା । ତୃତୀୟଟି ଦୁର୍ଲ୍ଲଭ ଜିନଷରେ ଭରପୂର । ସବୁ ଉଆସରେ କିଛି ନା କିଛି ନୂଆ ଜିନଷ ଅଛି— ଯାହା ଦେଖିଲେ ମନ ଲୋଭିଯାଏ । ସବୁ ଉଆସରେ ସୁନ୍ଦର ବଗିଚା ଅଛି । ଏଇମିତି ଗୋଟିଏ ପରେ ଗୋଟିଏ ଉଆସ ଦେଖି ସେ ଶତତମ ଉଆସରେ ପହଞ୍ଚିଗଲେ । ଯାହା ଦେଖିଲେ, ମନ ତାଙ୍କର ମରିଗଲା । ସେଠି ଅଟ୍ଟାଳିକା ତ ନାହିଁ । ଏଠି ସେଠି କୁଡ଼ିଆ ଘର । ଘରଆଡ଼ ଅପରିଷ୍କାର, ଅପରିଚ୍ଛନ୍ନ । ଘରଆଡ଼େ ଆବର୍ଜନାପୂର୍ଣ୍ଣ । ମାଟି ପଥର ଠାଆକୁ ଠାଆ ଜମା ହୋଇଛି । ସେଠି ସାପ ବେଙ୍ଗ ଭର୍ତ୍ତି । ଦେଖିଲେ ମନରେ ସଙ୍କୋଚ ଆସେ । ବ୍ରାହ୍ମଣଗୋରଙ୍କୁ ସେସବୁ ଭଲ ଲାଗିଲା ନାହିଁ । ମନେ ମନେ ବ୍ରାହ୍ମଣଗୋର ଭାବିଲେ, ରାଜା ଜୟଦ୍ରୁଲ୍‌ଙ୍କ ରୁଚି ସୁନ୍ଦର । ଚରିତ୍ରବନ୍ତ ପୁରୁଷ ସେ । ଏପରି ଏକ ଉଆସର କଳ୍ପନା ତାଙ୍କ ପକ୍ଷେ ଅସଙ୍ଗତ । ପୁଣି ଭାବିଲେ, ହୁଏତ ଏହା ପଛରେ କିଛି ଗୂଢ଼ ରହସ୍ୟ ଥାଇପାରେ । ତେଣୁ ସଂପୂର୍ଣ୍ଣ ନ ଦେଖି ମତାମତ ତାଙ୍କ ଅନୁପସ୍ଥିତିରେ ମନେ ମନେ ଦେବା କି ସୁନ୍ଦର ପନ୍ଥା । ତେଣୁ ଉଆସକୁ ଲାଗିଥିବା ବଗିଚାକୁ ସେ ଗଲେ ।

ବଗିଚାଟି ବର୍ଗାକାର । ଏଥିରେ ଅସଂଖ୍ୟ ଗଛ ଅଛି । ସବୁ ଗଛ ବେଶ୍ ଡେଙ୍ଗା ଡେଙ୍ଗା । ସବୁଥିରେ ଫୁଲ ଭରି ରହିଛି, ସେ ପୁଣି ବିଭିନ୍ନ ରଙ୍ଗର । ସେ ସବୁର ବାସ୍ନା ମଧୁର । ବଗିଚାଟି ମହକୁଛି ।

ବଗିଚାର ମଝିରେ ମଝିରେ ପୋଖରୀ । ବେଶ୍ ନିବିଡ଼ । ପାଣି ସ୍ୱଚ୍ଛ । ନିର୍ମଳ । କାଚ କେନ୍ଦୁପରି । ପୋଖରୀଗୁଡ଼ିକ ପଦ୍ମ

ଫୁଲରେ ଭରପୂର । ଭଅଁର ସବୁ ଗୁଣୁ ଗୁଣୁ ଶବ୍ଦ କରି ସେଠି ବୁଲୁଥାନ୍ତି ।

ବଗିଚାରେ ଝରଣାର ଅଭାବ ନାହିଁ । ସେସବୁ ଝରସ୍ରୋତା । କଳକଳ ନାଦରେ ପାଣି ଧାଇଁ ଚାଲିଛି । ନାନା ରଙ୍ଗର ଚିତ୍ର ବିଚିତ୍ର ପ୍ରଜାପତି ଏଠି ଉଡ଼ିବାରେ ବ୍ୟସ୍ତ । ଏଠି ବହୁତ ପ୍ରକାର ପକ୍ଷୀ ଦେଖିବାକୁ ମିଳେ । ସେମାନଙ୍କର ରଙ୍ଗ ସୁନ୍ଦର । କାକଳି ମଧ୍ୟ ମଧୁର । ପ୍ରାଣସ୍ପର୍ଶୀ ।

ବଗିଚା ମଝିରେ ବିଶ୍ରାମକକ୍ଷ । ଶଙ୍ଖମଲମଲ ପଥରରେ ତିଆରି । ତାହା ଅତ୍ୟନ୍ତ ପରିଷ୍କାର । ପରିଚ୍ଛନ୍ନ । ସୁସଜ୍ଜିତ । ସେଥିରେ ସୁନାର ପଲଙ୍କ ପଡ଼ିଛି । ତା ଉପରେ ମଖମଲ କନାର ଗଦି । ତାହା ସିଲ୍‌କର ବିଛଣା ଚଦରରେ ଆବୃତ । ସତେକି, ତାହା ବିଶ୍ରାମ ପାଇଁ ଉଦ୍ଦିଷ୍ଟ ।

ବଗିଚା ବୁଲିବୁଲି ଜ୍ୟାହାଙ୍ଗୀର କ୍ଳାନ୍ତ ହୋଇପଡ଼ିଥିଲେ । ସେ ବିଶ୍ରାମ ନେବାପାଇଁ ନିଜକୁ ସେଇ ସୁ-ଶଯ୍ୟାରେ ଲମ୍ବାଇ-ଦେଲେ । ସାଥେ ସାଥେ ଆଖିକୁ ନିଦ ଆସିଗଲା ।

ପରୀମାନେ ସୁନ୍ଦରୀ । ତେବେବି ତାଙ୍କର ଲୋଭନୀୟ, ଅସମ୍ଭବ ରକମର । ସେମାନେ ଯେଉଁ ରାଜ୍ୟରେ ରୁହନ୍ତି, ତା ନାଁ ପରୀ ରାଇଜ । ସେମାନେ ସୌନ୍ଦର୍ଯ୍ୟପ୍ରିୟ । ରାଜା ଜାସଦ୍ବୁଲଙ୍କ ବଗିଚା ଏକ ସୌନ୍ଦର୍ଯ୍ୟର ପସରା । ତେଣୁ ଏଥିରେ ବିଚରଣ କରିବାକୁ ସେମାନଙ୍କର ଖୁବ୍ ଲୋଭ । ସୁବିଧା ପାଇଲେ ସେମାନେ ଏଠାକୁ ବୁଲିଆସନ୍ତି । ନିଜ ରୂପରେ ଆସିଲେ ବିପଦ ଅଛି । ସେକଥା ସେମାନେ ଜାଣନ୍ତି, ତେଣୁ ସେମାନେ ପକ୍ଷୀରୂପ ଧରି ଆସନ୍ତି ।

ପରୀ ରାଇଜର ଜେମା ସାହାପସନ୍ଦ । ସେ ଅତ୍ୟନ୍ତ ସୁନ୍ଦରୀ । ବାହାରେ ବୁଲି ପବନ ଖାଇବାକୁ ତାଙ୍କର ଭାରିସଉକ । ବିଶେଷତଃ

ରାଜା ଜାସତ୍ରୁଲଙ୍କର ଏହି ବଗିଚାରେ ବୁଲିବାକୁରେ ସେ ଅଭ୍ୟସ୍ତ ।
ସେଦିନ ଜେମା ଏହି ବଗିଚାରେ ବିଚରଣ କରୁଥାଆନ୍ତି ।

ଏହା ଭିତରେ ବିଶ୍ରାମକକ୍ଷ ଦେଇ ସେ ଉଡ଼ିଯାଉଥିଲେ ।
ବିଛଣାରେ ଶୋଇଥିବା ଯୁବକ ଉପରେ ତାଙ୍କର ନଜର ପଡ଼ିଗଲା ।
ଯୁବକଟିର କନ୍ଦର୍ପ ରୂପ ଓ ସ୍ୱାସ୍ଥ୍ୟର ତେଜରେ ଜେମା ମୁଗ୍ଧ ।
ବିମୋହିତ । ବିହ୍ୱଳ ଉନ୍ମାଦିନୀ । ସେ ଆଉ ସେଠୁ ଯାଇପାରିଲେ
ନାହିଁ । ଯୁବରାଜ ଶୋଇଥିବା ଖଟ ଉପରେ ବସି ପଡ଼ିଲେ ।

ପରୀମାନେ ପୃଥିବୀ ପୃଷ୍ଠକୁ ଛୁଇଁଲେ ନିଜ ରୂପ ଫେରିପାଇବେ
ବୋଲି ଅଭିଶାପ ଅଛି । ଜେମା ସେଥିରୁ ବାଦ ପଡ଼ିଲେନାହିଁ । ସେ
ଖଟରେ ବସୁ ବସୁ ତାଙ୍କ ନିଜ ରୂପ ଧାରଣ କରିଲେ ।

ଜେମା ରାଜପୁତ୍ରଙ୍କୁ ଦେଖି ପାଗଳ । ସେ ନିଜକୁ ଆଉ ସମ୍ଭାଳି
ପାରିଲେନାହିଁ । ରାଜପୁତ୍ରଙ୍କ ମୁହଁ ଦେଖିବାକୁ ତାଙ୍କ ଉପରକୁ ସେ
ଝୁଙ୍କି ପଡ଼ିଲେ । ମନ ତାଙ୍କରେ ବ୍ୟସ୍ତ, ଚଞ୍ଚଳ । ଛାତି ପଡ଼ୁଥାଏ,
ଉଠୁଥାଏ । ନିଶ୍ୱାସ ଖର, ଉତ୍ତପ୍ତ । ସେଇ ନିଶ୍ୱାସ ବାରମ୍ବାର
ବ୍ରାହାମଗୋରଙ୍କ ମୁହଁରେ ବାଜିଲା ।

ତତଲା ନିଶ୍ୱାସ ବାଜିବାରୁ ବ୍ରାହାମ୍‌ଗୋରଙ୍କ ନିଦ ଭାଙ୍ଗିଗଲା ।
ଆଖି ଆଗରେ ଯାହା ଦେଖିଲେ, ସେ ବିଶ୍ୱାସ କରି ପାରିଲେନାହିଁ ।
ତାଙ୍କୁ ଲାଗିଲା—ସତେ ଯେମିତି ସେ ସ୍ୱପ୍ନ ଦେଖୁଛନ୍ତି ।

ଯୁବରାଜ ନିଦ ଭାଙ୍ଗିବା ଦେଖି ସାହାପସନ୍ଦ ଖୁବ୍ ଖୁସି ।
ଆଦର ସହକାରେ ତାଙ୍କ ହାତ ଉଠାଇଆଣି କହିଲେ—"ଯୁବରାଜ,
ମୁଁ ତମକୁ ପୃଥିବୀଯାକ ଖୁବ୍ ଖୋଜୁଥିଲି । ପାଇଲି ନାହିଁ । ଆଜି
ମୋର ଭାଗ୍ୟ । ତମକୁ ପାଇ ମୁଁ ଧନ୍ୟ ।"

ବ୍ରାହାମ୍‌ଗୋର ସାହାପସନ୍ଦ ରୂପରେ ମୁଗ୍ଧ । ଅପଲକ
ନୟନରେ ତାଙ୍କୁ ସେ ଚାହିଁ ରହିଥାଆନ୍ତି । ଜେମାଙ୍କର ଦୁଇପଦ

କଥା ତାଙ୍କର ତନ୍ଦ୍ରା ଭାଙ୍ଗିଦେଲା । ସେ କହିଲେ—"ତୁମେ ଏତେ ସୁନ୍ଦର, ଭାଷାରେ ତା କହିହେବ ନାହିଁ । ବିଧାତା ଯେ ଏପରି ସୁନ୍ଦରୀ ସୃଷ୍ଟି କରିପାରନ୍ତି, ତାହା ମୁଁ ସ୍ୱପ୍ନରେ ବି ଭାବି ପାରୁ ନାହିଁ । ଆଜି ତମକୁ ଦେଖି ମୁଁ ଭାବୁଛି, ମୁଁ ବାସ୍ତବ ଜଗତରେ ନାହିଁ । ସ୍ୱପ୍ନ ଦେଖୁଛି ।"

ଉଭୟେ ଉଭୟଙ୍କ ରୂପରେ ମୁଗ୍‌ଧ । ସମ୍ମୋହିତ । କେହି କାହାକୁ ଦଣ୍ଡେ ଛାଡ଼ିବାକୁ ପ୍ରସ୍ତୁତ ନୁହନ୍ତି । ତେଣୁ ତୁରନ୍ତ ବିବାହ ହେବାପାଇଁ ସେମାନେ ଏକମତ ।

ରାଜପୁତ୍ର ବ୍ରାହ୍ମାମ୍‌ଗୋର କହିଲେ—"ସେ ଅସୁର ରାଜା ଜାସଦ୍ରୁଲ୍‌ଙ୍କ ଅତିଥି । ସେ ଏ ମୁଲକର ରାଜା । ସର୍ବ ଶକ୍ତିମାନ । ବିବାହ ପୂର୍ବରୁ ତାଙ୍କର ଅନୁମତି ନେବା ବିଧେୟ ।"

ସାହାପସନ୍ଦ ବ୍ରାହ୍ମାମଗୋରଙ୍କୁ ବିବାହ କରିବାକୁ ଉଚ୍ଛନ୍ନ । ବ୍ୟଗ୍ର । ଯେତେ ଶୀଘ୍ର ଏହା କାର୍ଯ୍ୟକାରୀ ହେବ, ସେତେ ଭଲ । ତେଣୁ ବ୍ରାହ୍ମାମ୍‌ଗୋରଙ୍କ କଥାରେ ସେ ରାଜି ହୋଇଗଲେ ।

ଉଭୟେ ରାଜା ଜାସଦ୍ରୁଲ୍‌ଙ୍କୁ ଭେଟି ମନକଥା କହିଲେ । ରାଜା ଏକଥା ଶୁଣି ଭାରି ଖୁସି । ଖାଲି ସମ୍ମତି ତ ଦେଲେ ନାହିଁ, ସାଙ୍ଗେ ସାଙ୍ଗେ ବିବାହର ଆୟୋଜନରେ ଲାଗିପଡ଼ିଲେ ।

ମହା ଆଡ଼ମ୍ବର ସହକାରେ ବିବାହ ସମ୍ପନ୍ନ ହେଲା । ତାପରେ ରାଜା ଜାସଦ୍ରୁଲ୍ କହିଲେ "ଆପଣ ଦୁହେଁ ମୋର ଅତିଥି । ସମସ୍ତ ବ୍ୟବସ୍ଥା ମୁଁ କରି ଦେଉଛି । ଆପଣମାନେ ଏଠି ରହନ୍ତୁ ।"

ସେମାନଙ୍କର ବିବାହିତ ଜୀବନର ଆରମ୍ଭ । କେହି କାହାକୁ ଦଣ୍ଡେ ପାଖଛଡ଼ା କରିବାକୁ ନାରାଜ । ଏମିତିକି ପରସ୍ପର କେବଳ ନିଜ ନିଜ ଚିନ୍ତାରେ ବିଭୋର ରହିଲେ । ଅନ୍ୟ କିଛି ଭାବିବାକୁ ସମୟ ସେମାନଙ୍କର ନାହିଁ । ରାଜା ଜାସଦ୍ରୁଲ୍‌ଙ୍କର ବ୍ୟବସ୍ଥା ଅତି

ଚମତ୍କାର । ସେମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟରେ କୌଣସି ଟିକିଏ ହେଲେ ବାଧା ଆସୁନଥାଏ । ସେମାନେ ଖେଳ ହୋଇ କେତେକାଳ କାଟି ଦେଲେ ।

ସବୁଦିନ ସମାନ ଯାଏ ନାହିଁ । ସେଇ ଗୋଟିଏ କଥାରେ ସବୁଦିନ ପାଇଁ ମନ ବି ସନ୍ତୁଷ୍ଟ ହୋଇପାରେ ନାହିଁ । ଗୋଟିଏ କଥା ସରିଲେ, ମନକୁ ଆଉ ଗୋଟିଏ କଥା ଆସେ । ଏହା ମଣିଷର ପ୍ରକୃତି ।

ଏବେ ବ୍ରାହାମ୍‌ଗୋରଙ୍କ ମନ ଅସ୍ଥିର । ବିବାହର ମୋହ କଟିଗଲାଣି । ମନ ତାଙ୍କର କେଉଁଠି ଲାଗୁନାହିଁ । ସବୁବେଳେ ଘର କଥା ମନେ ପଡ଼ୁଛି । ନିଜର ବାପା, ମା, ଘୋଡ଼ା, କୁକୁର-ଙ୍କର ଛବି ଆଖି ଆଗରେ ନାଚଉଠେ । ସେ ବ୍ୟସ୍ତବ୍ୟସ୍ତ ହୋଇ ପଡ଼ନ୍ତି ।

ବେଳେ ବେଳେ ମନରେ ତାଙ୍କର ଆସେ ଅସରନ୍ତି ଭାବନା । ଭାବନ୍ତି—ମୁଁ ବାପା ମାଙ୍କର ଏକମାତ୍ର ଅଳିଅଳ ପୁଅ । ସେମାନେ ମୋତେ ପ୍ରାଣଠାରୁ ଅଧିକ ଭଲ ପାଉଥିଲେ । ମତେ ଦଣ୍ଡେ ନ ଦେଖିଲେ, ସେମାନେ ବାଉଳା ହୋଇଯାଉଥିଲେ । ମୋର ଘୋଡ଼ା ଆଉ କୁକୁର ଖୁବ୍ ବିଶ୍ୱସ୍ତ । ଦିନେ ହେଲେ, ସେମାନେ ମୋତେ ବିପଦରେ ପକାଇ ନାହାନ୍ତି । ସେମାନଙ୍କୁ ଛାଡ଼ି ଏଠି ମୁଁ ନିଶ୍ଚିନ୍ତରେ ଅଛି । ସେମାନଙ୍କର ଖବର ଟିକିଏ ବି ରଖିଲିନାହିଁ । ଏତେଣେ ସେମାନେ ମତେ ଝୁରି ହେଉଥିବେ । ମୁଁ ସେମାନଙ୍କ ପାଇଁ କ'ଣ କଲି ? ଏମିତିକି, ମୁଁ ଏଠି ଭଲରେ ଥିବା ଖବରବି ପଠେଇଲି ନାହିଁ । ମୁଁ ଅପଦାର୍ଥ । ସ୍ୱାର୍ଥପର । କୃତଘ୍ନ । ଏସବୁ ଭାବି ବ୍ରାହାମ୍‌ଗୋର ନିଜକୁ ମନେ ମନେ ଧିକକାର କରନ୍ତି ।

ଯେ ଯାହାକୁ ଭଲପାଏ; ତାକୁ ସେ ହୃଦୟର ସମସ୍ତକଥା

କହେ । ପ୍ରଥମେ ପ୍ରଥମେ ବ୍ରାହାମ୍‌ଗୋର ତାଙ୍କର ମନରକଥା ସାହାପସନ୍ଦଙ୍କୁ କହୁଥିଲେ । ସେ ଦେଖିଲେ—ସାହାପସନ୍ଦଙ୍କର ତାଙ୍କ ବାପା; ମା, କୁକୁର ଓ ଘୋଡ଼ା ବିଷୟରେ ଶୁଣିବାର ଆଗ୍ରହ କି ଉତ୍କଣ୍ଠା ନାହିଁ । ତେଣୁ ଏବେ ସେ ଆଉ ସାହାପସନ୍ଦଙ୍କୁ ସେମାନଙ୍କ ବିଷୟରେ କିଛି କହନ୍ତି ନାହିଁ ।

ମନର ଦୁଃଖ ଅନ୍ୟ ଆଗରେ ପ୍ରକାଶ କରିଲେ ଲଘବ ହୁଏ । ବ୍ରାହାମ୍‌ଗୋର ନିଜ ଦୁଃଖ କାହାକୁ କହିପାରୁନଥିଲେ । ତେଣୁ ଏବେ ସେ ଘଣ୍ଟା ଘଣ୍ଟା ଧରି ଚୁପ୍ ହୋଇ ବସିରହନ୍ତି । ପିଲାଦିନର କଥା ତାଙ୍କ ଆଖି ଆଗରେ ଭାସି ଯାଏ । ମନ ତାଙ୍କର ଚଞ୍ଚଳ ଓ ବ୍ୟତିବ୍ୟସ୍ତ ହୋଇଉଠେ । ଦେହରେ ଏକ ଶିହରଣ ଖେଳିଯାଏ । ତାଙ୍କ ସ୍ମୃତିପଟ୍ଟ ଦୁନିଆର କଥା ସେ ଭୁଲିଯାନ୍ତି । ଏଇମିତି କେତେବେଳ କଟିଯାଏ । ଆପେ ଆପେ ଦୀର୍ଘନିଶ୍ୱାସଟି ଗୁଡି ଫିଟାଇ ବାହାରି ଆସେ । ସେ ପୁଣି ଫେରି ଆସନ୍ତି, ବାସ୍ତବ ଜଗତକୁ ।

ଖାଦ୍ୟପ୍ରତି ସବୁ ଆଗ୍ରହ ତାଙ୍କର ଆଉ ନାହିଁ । ତେଣୁ ଖାଦ୍ୟ ନ ଖାଇ ସ୍ୱାସ୍ଥ୍ୟରେ ତାଙ୍କର ପରିବର୍ତ୍ତନ ଆସିଛି । ପୂର୍ବରୂପ ଆଉ ତେଜ ତାଙ୍କର ମଳିନ ପଡ଼ିଯାଇଛି । ଚେହେରା ତାଙ୍କର ଶୁଷ୍କ ଓ ନିସ୍ତ୍ରଭ । ଦିନକୁ ଦିନ ସେ ଶୁଖିଯାଉଛନ୍ତି ।

ରାଜା ଜାସଦ୍ରୁଲ୍ ସ୍ନେହୀ । ବନ୍ଧୁବତ୍ସଳ । ବ୍ରାହାମ୍‌ଗୋରଙ୍କୁ ସେ ପୁଅଠାରୁ ଆହୁରି ଅଧିକ ସ୍ନେହ କରନ୍ତି । ବ୍ରାହାମ୍‌ଗୋର ତାଙ୍କ ସ୍ତ୍ରୀ ସହିତ ସୁଖସ୍ୱାଚ୍ଛନ୍ଦ୍ୟରେ ରହନ୍ତୁ—ଏହାହିଁ ଥିଲା ରାଜା ଜାସଦ୍ରୁଲ୍‌ଙ୍କର ଏକାନ୍ତ ଇଚ୍ଛା । ସେଥିପାଇଁ ସମସ୍ତ ପ୍ରକାର ବ୍ୟବସ୍ଥା କରିବାକୁ ସେ ପଛଉନଥିଲେ । ତଥାପି ତାଙ୍କର ମନ ମାନିଲା ନାହିଁ । ସେ ନିଜେ ତାଙ୍କର ସୁବିଧା ଅସୁବିଧା ଜାଣିବାକୁ

ଗୁହଁ ଥିଲେ ।

ବ୍ରାହାମ୍‌ଗୋର ଘରି ଭଦ୍ର । ନିଜର ସୁବିଧା, ଅସୁବିଧା ବିଷୟରେ ଖୋଲାଖୋଲି ସେ କେବେ କହନ୍ତି ନାହିଁ । ତାଙ୍କଠାରୁ ଏ ବିଷୟ ଜାଣିବା ଏକ କଷ୍ଟକର ବ୍ୟାପାର । ଏ କଥା ରାଜା ଜାସଦ୍ରୁଲ୍ଲ ଜାଣନ୍ତି । ପ୍ରକୃତ କଥା ଜାଣିବାପାଇଁ ସେ ବ୍ରାହାମ୍‌-ଗୋରଙ୍କ ରହିବା ଘର ତଳେ ଏକ ଗୁପ୍ତଘର ତିଆରି କଲେ । ସେ ଘରର ନିର୍ମାଣ କୌଶଳ ଅଦ୍ଭୁତ । ଉପର ଘରେ ଯେ ଯାହା କଥାବାର୍ତ୍ତା ହେବ, ତଳ ଘରକୁ ସେ ସବୁ ପରିଷ୍କାର ଭାବରେ ଶୁଣାଯିବ । ରାଜା ଜାସଦ୍ରୁଲ୍ଲ ସେଠି ବସି ସେମାଙ୍କର କଥୋପ-କଥନ ଶୁଣନ୍ତି । ପ୍ରଥମେ ପ୍ରଥମେ ସେମାନଙ୍କର ଆନନ୍ଦରେ ରାଜା ଜସଦ୍ରୁଲ୍ଲ ଖୁସିଥିଲେ । ଯେଉଁଦିନ ବ୍ରାହାମ୍‌ଗୋର ତାଙ୍କ ସ୍ତ୍ରୀଙ୍କ ଆଗରେ ତାଙ୍କ ନିଜ ରାଜ୍ୟ, ବାପା, ମା' ଘୋଡ଼ା ଓ କୁକୁରର କଥା କହି ଦୁଃଖ କଲେ, ସେଇଦିନୁ ଜାସଦ୍ରୁଲ୍ଲ ଦବି ଯାଇଛନ୍ତି ।

ରାଜା ଜାସଦ୍ରୁଲ୍ଲ ଦେଖନ୍ତି—ଯୁବରାଜ ଚିନ୍ତିତ । ସବୁବେଳେ ସେ ଚୂପ୍‌ହୋଇ ବସି ରହନ୍ତି । ତାଙ୍କର ଚେହେରାରେ ପରିବର୍ତ୍ତନ ଆସିଛି । ସେ ଶୁଖିଗଲେଣି । ଏସବୁ ଦେଖି ରାଜା ଜାସଦ୍ରୁଲ୍ଲଙ୍କ ମନ ମରିଯାଇଛି । ସେ ବ୍ରାହାମ୍‌ଗୋରଙ୍କୁ ପୁଅଠାରୁ ଅଧିକ ଭଲ ପାଆନ୍ତି । ତାକଂର ମଙ୍ଗଳପାଇଁ ସେ ତାଙ୍କୁ ଘରେ ରଖିଥିଲେ । ତାଙ୍କର ଶୁଖିଲା ମୁହଁ ଓ ମଳିନ ଚେହେରା ଦେଖି ରାଜା ଜାସଦ୍ରୁଲ୍ଲକଂର ମନସ୍ତାପ ବଢ଼ିଲା । ସେ ବ୍ରାହାମ୍‌ଗୋରକଂ ମନର ଦୁଃଖ ଜାଣିବାପାଇ ଚିନ୍ତିତ ହୋଇଥିଲେ ।

ଦିନେ ବ୍ରାହାମ୍‌ଗୋର ଏକାକୀ ବସିଥାଆନ୍ତି । ରାଜା ଜାସଦ୍ରୁଲ୍ଲ ଏଇ ଅବସରରେ ସେଠାରେ ପହଞ୍ଚିଗଲେ । ସେ ସବୁ ଜାଣି, ନ 'ଜାଣିଲା ପରି ବ୍ରାହାମ୍‌ଗୋରଙ୍କୁ ତାଂକ ଦୁଃଖର କାରଣ ପଚାରିଲେ ।

ରାଜକୁମାର ଅତ୍ୟନ୍ତ ଭଦ୍ର । ଜାସଦ୍ରୁଲ୍ଙ୍କ ଆତିଥ୍ୟରେ ସେ ମୁଗ୍ଧ । ଏଠାରେ ରହିବାକୁ ତାଙ୍କୁ ଆଉ ଭଲ ଲାଗୁନାହିଁ । ଏହା ସତ୍ୟ । ତାହା ପ୍ରକାଶ କଲେ, ରାଜା ଜାସଦ୍ରୁଲ୍ଙ୍କ ମନରେ କଷ୍ଟ ହେବ । ସେ ସେକଥା ଜାଣନ୍ତି । ତେଣୁ ସତକଥା କହି ରାଜାଂକ ମନରେ କଷ୍ଟ ଦେବାପାଇଁ ସେ ଅନିଚ୍ଛୁକ ।

ବ୍ରାହାମ୍‌ଗୋର ପ୍ରଥମେ ସେଥିପାଇଁ ନିରୁତ୍ତର ରହିଲେ । କିନ୍ତୁ ଜାସଦ୍ରୁଲ୍ଙ୍କ ବାରମ୍ବାର ଅନୁରୋଧ ସେ ଏଡ଼ି ପାରିଲେନାହିଁ । ତେଣୁ ସେ ବାଧହୋଇ କହିଲେ "ଦୈତ୍ୟରାଜ । ଆପଣଂକର ଆତିଥ୍ୟ, ସ୍ନେହ, ଶ୍ରଦ୍ଧା ଅଲୌକିକ । ଅବିସ୍ମରଣୀୟ । ସବୁ ସୁଖ ସ୍ୱାଚ୍ଛନ୍ଦ୍ୟ ମଧ୍ୟରେ ମୁଁ ଏଠାରେ ଅଛି । ମୋର ଅଭାବ କିଛି ନାହିଁ । କିନ୍ତୁ ମୋର ରାଜ୍ୟ, ବାପା ମା, ଘୋଡ଼ା, କୁକୁରଙ୍କ କଥା ମୋତେ ବିଭ୍ରାନ୍ତ କରୁଛି । ମୁଁ ଭାବୁଛି—ମୁଁ ଯଦି ସେମାନଙ୍କ ପାଖକୁ ନ ଯିବି ତେବେ ପାଗଳ ହୋଇଯିବି । ଦୟାକରି ମୋତେ ଅନୁମତି ଦିଅନ୍ତୁ । ମୁଁ ଯାଏ, ସେମାନଙ୍କୁ ଟିକଏ ଦେଖେ ।"

ରାଜା ଜାସଦ୍ରୁଲ୍ କହିଲେ—"ତୁମର ଯିବାରେ ମୋର ଆପତ୍ତି ନାହିଁ । କିନ୍ତୁ ତୁମ ଅନୁପସ୍ଥିତିରେ ତମ ରାଜ୍ୟର ଅବସ୍ଥା ବଦଳି ଯାଇଛି । ତୁମେଗଲେ ସେଠି ତୁମକୁ କେହି ଚିହ୍ନିବେ ନାହିଁ । ତମର ତ ଯିବାକୁ ନିହାତି ଇଚ୍ଛା ହେଉଛି । ତେବେ ସାଙ୍ଗରେ ଏ ବାଳଟି ନେଇଯାଅ । ବିପଦ ପଡ଼ିଲେ ସେଇଟିକୁ ନିଆଁରେ ପକାଇ ଦେବ । ସାଙ୍ଗେ ସାଙ୍ଗେ ମୁଁ ସେଠାରେ ପହଞ୍ଚିଯିବି ।"

ବ୍ରାହାମ୍‌ଗୋର ଓ ସାନାପସନ୍ଦ ରାଜା ଜାସଦ୍ରୁଲ୍ଙ୍କଠାରୁ ବିଦାୟ ନେଲେ । ବିଦାୟର ଦୃଶ୍ୟ ଅତ୍ୟନ୍ତ ହୃଦୟବିଦାରକ । ସମସ୍ତଙ୍କ ଆଖିରେ ଲୁହ । ତାପର ମୁହୂର୍ତ୍ତକ ପରେ ଦେଖିଲେ ବେଳକୁ ବ୍ରାହାମ୍‌ଗୋର ନିଜ ରାଜଧାନୀ ଉପକଣ୍ଠରେ ପହଞ୍ଚି ଯାଇଛନ୍ତି ।

ସାର୍ଥୀରେ ତାଙ୍କର ଅନନ୍ୟ ସୁନ୍ଦରୀ ସ୍ତ୍ରୀ । କିନ୍ତୁ ଆଶ୍ଚର୍ଯ୍ୟ । କେହି ତାଙ୍କୁ ଚିହ୍ନିପାରୁନାହାନ୍ତି ।

ବହୁଦିନ ଧରି ବ୍ରାହାମ୍‌ଗୋର ଅସୁର ରାଜ୍ୟରେ ଥିଲେ । ସେଠାରେ ତାଙ୍କର ଚେହେରା ପରିବର୍ତ୍ତନ ହୋଇଛି । ସାଧାରଣ ଲୋକପକ୍ଷେ ତାଙ୍କୁ ଚିହ୍ନିବା କଷ୍ଟକର । କିନ୍ତୁ ନିଜର ଲୋକଙ୍କ କଥା ତ' ଅଲଗା । ସେମାନେ ତାଙ୍କୁ ଦେଖୁଛନ୍ତି । ଆଡ଼େଇ ଯାଉଛନ୍ତି । ହୁଏତ ଚିହ୍ନି ଅଚିହ୍ନା ପରି ଛଳନା କରୁଛନ୍ତି । ନିଜ ଲୋକମାନଙ୍କର ଏ ପ୍ରକାର ବ୍ୟବହାରରେ ସେ ଅସନ୍ତୁଷ୍ଟ । ବିସ୍ମିତ ।

ହଠାତ୍ ତାଙ୍କର ଜଣେ ଶିକାରି ଭୃତ୍ୟ ସହିତ ଦେଖାହେଲା । ଆଗେ ସେ ଖୁବ୍ ବିଶ୍ୱସ୍ତ ଥିଲା । ସେ ଶିକାରକୁ ବାହାରିଲେ, ଭୃତ୍ୟଟି ତାଙ୍କ ପଛେ ପଛେ ଯାଇ ଭଲ ଲାଗି ରହିଥାଏ । ସେ ବ୍ରାହାମ୍‌ଗୋରଙ୍କୁ ଚିହ୍ନିପକାଇଲେ । ପାଖକୁ ଦୌଡ଼ି ଆସି କହିଲା "ଆଶ୍ଚର୍ଯ୍ୟ ! ଖବର ଅନ୍ତର କିଛି ନାହିଁ । ତୁମ୍ଭେ ଏଠାରେ କପରି ରହିଲେ । ଯାହାହେଉ, ତୁମ୍ଭେ କ ଆସିବା କେହି ଜାଣିନାହାନ୍ତି । ଭଲ ହୋଇଛି ।"

ତାପରେ ସେ କହିଲା, "ତୁମ୍ଭଙ୍କ ଚିନ୍ତାରେ ରାଜା ଓ ରାଣୀ ଅକାଳରେ ସଂସାର ଛାଡ଼ିଲେ । ଜଣେ ସେନାପତି ସୈନ୍ୟମାନଙ୍କ ସାହାଯ୍ୟରେ ରାଜଗାଦି ଦଖଲ କରି ବସିଛି । ସେ ଏବେ ରାଜା । କିନ୍ତୁ, କାଳେ ତୁମ୍ଭେ ଫେରିଆସିବେ, ସେଇ ଭୟରେ ତାଙ୍କୁ ନିଦ ନାହିଁ । ସେ ଜାଣେ—ଦିନେ ନା ଦିନେ ତୁମ୍ଭେ ଅଜ୍ଞାତ ଯାତ୍ରାରୁ ଫେରିବେ । ନିମିଷକେ ସେ ଗାଦିଚ୍ୟୁତ ହେବ । ତେଣୁ, ସେଥିରୁ ରକ୍ଷା ପାଇବା ପାଇଁ ସେ ଘୋଷଣା କରିଛି—ତୁମ୍ଭଙ୍କୁ ଯେ ମୃତ ବା ଜୀବିତ ଅବସ୍ଥାରେ ଆଣିଦେବ, ସେ ରାଜ୍ୟରୁ ଅଧେ ପାଇବ । ଯିଏ ତୁମ୍ଭଙ୍କୁ ଆଶ୍ରୟ ଦେବ, ତାକୁ ଶୂଳି ବି ଦିଆଯିବ । ତେଣୁ ତୁମ୍ଭଙ୍କୁ

ଯେ ଚାହିଁବେ, ସେମାନେ ଅତାହ୍ଲା ପର ବ୍ୟବହାର କରିବେ ଗୁମୁଙ୍କୁ କେହି ଆଶ୍ରୟ ଦେବାକଥା ମୋଟେ ଉଠୁନାହିଁ ।”

ବ୍ରାହାମ୍‌ଗୋର ଭାବିଲେ—ଦୈତ୍ୟରାଜଙ୍କ ଭବିଷ୍ୟତ ବାଣୀ ଅକ୍ଷରେ ଅକ୍ଷରେ ସତ୍ୟ । ସେ କୁଆଡ଼େ ଯିବେ, ସେ ବିଷୟରେ ଚିନ୍ତିତ ।

ଶିକାରୀଟି କହିଲା—“ଗୁମୁଙ୍କର ଅନ୍ତରେ ମୁଁ ପ୍ରତିପାଳିତ । ମୁଣ୍ଡ ପଛେ ଯାଉ, ଗୁମୁଙ୍କୁ ଆଉ କେଉଁଠି ରହିବାକୁ ମୁଁ ଦେବି ନାହିଁ । ତୁମ୍ଭେ ମୋ ଦରିଦ୍ର କୁଟୀରକୁ ଭାଜେ କରନ୍ତୁ । ମୋର କୋଠା ଉପରେ ଚାଲି ଘରଟିଏ ଅଛି । ସେଇଟି ଭାରି ସୁନ୍ଦର । ନିରୋଳା ବି । ତୁମ୍ଭେ ସେଇଠି ଏସ୍ଥିକ ରହିପିବେ । ଅସୁବିଧା ହେବ ନାହିଁ । ମୋ ମାଆ ଅନ୍ଧୁଣୀ । କିଏ ଗଲା କିଏ ଆସିଲା ସେ ଜାଣିପାରେ ନାହିଁ । ତୁମ୍ଭେ ଓ ମୁଁ ସକାଳୁ ଶିକାରକୁ ଯିବା । ସଂନ୍ଧ୍ୟାରେ ଫେରିବା । ତେଣୁ ମୋ ଘରେ ରହିଲେ କେହି ଟେର ପାଇବେ ନାହିଁ ।

ବ୍ରାହାମ୍‌ଗୋର ଓ ସାହାପସନ୍ଦ ନିଜ ଭିତରେ ଆଲୋଚନା କଲେ । ଶିକାରୀଟିର କଥାରେ ରାଜି ହେବା ଛଡ଼ା ତାଙ୍କର ଅନ୍ୟ ଉପାୟ ନଥିଲା । ସେମାନେ ତାର ଚାଲିଘରେ ରହିଲେ ।

କେତେଦିନ ବିତିଗଲା । ଦିନକର କଥା । ସମାନ୍ତୁ ସକାଳୁ ଶିକାରୀ ଓ ବ୍ରାହାମ୍‌ଗୋର ଶିକାରକୁ ବାହାରି ଗଲେ । ସେଦିନ ପାଗ ଭାରି ବଢ଼ିଆ ହୋଇଥାଏ । ବାହାରେ ଉଜ୍ଜ୍ୱଳ ସୁନେଲି ଖରା । ଅତ୍ୟନ୍ତ ଲୋଭମୟ । ସାହାପସନ୍ଦ ମୁଣ୍ଡରେ ବାଳ ବହୁତ । ତାହା ତାଙ୍କ ବଳାଗଣ୍ଠି ଯାଏ ଲମ୍ବିଥାଏ । ରଙ୍ଗ ତାର ସୁନେଲି । ଏମିତି ଖରା ଦେଖିଲେ, ସେ ମୁଣ୍ଡବାଳ ସଫା କରନ୍ତି । ସେଦିନ ସେ ମୁଣ୍ଡବାଳ ସଫାକଲେ । ଚାଲିଘରର ଝରକା ବାଟେ ପଦାକୁ

ସେ ସବୁ ଲମ୍ବାଇଦେଲେ ।

ରାଜ୍ୟର ମୁଖ୍ୟ କଟୁଆଳ ଘୋଡ଼ା ଉପରେ ବସି ଶିକାରୀର ଘର ବାଟେ ଯାଉଥିଲା । ସେ ଉପରକୁ ଅନାଇଦେଲା । ଝରକା ବାଟେ ମନମୋହିନୀ ସ୍ତ୍ରୀ ଏବଂ ତାର ଅପରୂପ ରଙ୍ଗର ବାଳ ଦେଖି ସେ ସ୍ତମ୍ଭୀଭୂତ । ତାର ଚେତନାଶକ୍ତି ଲୋପପାଇଲା । ଘୋଡ଼ା ପିଠିରୁ ସେ ଆପେ ଆପେ ଖସିପଡ଼ିଲା । ସାଥୀରେ ଥିବା ଭୃତ୍ୟ-ମାନେ ତାର ଏ ଅବସ୍ଥା ଦେଖି ଚାଜୁବ । ତାକୁ ସେମାନେ ଧାଙ୍ଗେ ସାଙ୍ଗେ ଘରକୁ ନେଇଗଲେ । ସେଠି ଚେତାଆସିଲା । ତାର ପ୍ରଳାପ ଚାଲିଲା । ସେ ବାରମ୍ବାର ଶିଲ୍ପଘରର ଝରକା ନିକଟରେ ଦେଖି-ଥିବା ମନମୋହିନୀ ସ୍ତ୍ରୀ ଓ ତା ସୁନ୍ଦର ସୁନେଲି ବାଳ ବିଷୟରେ କହୁଥିଲା । ତୁଣ୍ଡବାଇଦ ସହସ୍ରକୋଶ । ଏ ଖବର ରାଜ୍ୟସାରା ହାଲୋର ହୋଇଗଲା । ରାଜାଙ୍କ କାନକୁ ବି ଗଲା । ଘଟଣାଟିର ଅନୁସନ୍ଧାନ ପାଇଁ ରାଜା ଆଦେଶ ଦେଲେ ।

ରାଜାଦେଶ ତଳେ ପଡ଼େନାହିଁ । ସାଥେ ସାଥେ ରାଜକର୍ମଚାରୀ କେତେଜଣ ଯାଇ ଶିକାରୀ ଘରେ ପହଞ୍ଚିଗଲେ । ବୁଝିଲେ—ଶିକାରୀ ନାହିଁ । ସକାଳୁ ଶିକାର ପାଇଁ ଜଙ୍ଗଲକୁ ବାହାରି ଯାଇଛି । ଘରେ ତାର ଖାଲି ବୁଢ଼ୀମା । ସେ ଅନ୍ଧୁଣୀ । ତାକୁ ସେମାନେ ଶିଲ୍ପଘରେ ଥିବା ସ୍ତ୍ରୀଲୋକ କଥା ପଚାରିଲେ ।

ଏ କଥା ଶୁଣି ବୁଢ଼ୀ ରାଗରେ ନିଆଁ । କହିଲା—"ସ୍ତ୍ରୀ ଲୋକ କ'ଣ ? ଏଠି ପୁରୁଷ ବି କେହି ନାହାନ୍ତି । କେବଳ ମୁଁ ଓ ମୋ ପୁଅ ଏଠି ରହୁ । ଯଦି ସନ୍ଦେହ ହେଉଛି, ସବୁଘର ବୁଲି ଦେଖି ଆସୁନ ।"

ବୁଢ଼ୀର କଥାଶୁଣି ସାହାପସନ୍ଦ ଛୁନିଆ । ଏଣେ ବୁଢ଼ୀ

କଥାରେ ରାଜକର୍ମଚାରୀମାନେ ଶଲ୍ୟ ଘର ଆଡ଼କୁ ମାଡ଼ିଆସିଲେ । ସାହାପସନ୍ଦଙ୍କର ଅପେକ୍ଷା କରିବାକୁ ବେଳ ଆଉ ନାହିଁ । ସେ ଶଲ୍ୟ ଘର ଭିତରୁ ବନ୍ଦକରି ଛୁରି ସାହାଯ୍ୟରେ ଗୃହରେ ଗୋଟିଏ କଣା କରିଦେଲେ । ନିଜେ ପାରୀଟିଏ ହୋଇ ସେଇ କଣାବାଟେ ପଦାକୁ ଉଡ଼ି ଚାଲିଗଲେ ।

ରାଜକର୍ମଚାରୀମାନେ ଦେଖିଲେ—ଶଲ୍ୟ ଘର ଭିତର ପଟୁ କବାଟ ବନ୍ଦ । ଯେତେ ବାଡ଼େଇଲେ, କେହି ଖୋଲିଲେ ନାହିଁ । ସେମାନେ କବାଟ ଭାଙ୍ଗିବାକୁ ବାଧ୍ୟହେଲେ । ଭିତରେ ପଶି ଦେଖିଲେ, ଘରଟି ଖାଲି । କେହି ନାହାନ୍ତି । ତାଙ୍କୁ ସବୁ ଆଶ୍ଚର୍ଯ୍ୟ ଲାଗିଲା । ତଥାପି ସେମାନେ କିଛି ଅଳକୂଳ ପାଇଲେ ନାହିଁ । ଫେରିଯାଇ ରାଜାଙ୍କୁ ଏକଥା ଜଣାଇଦେଲେ ।

ବିଚାରା ସାହାପସନ୍ଦ । ବ୍ରାହାମ୍ ଗୋରଙ୍କୁ ସେ ପ୍ରାଣଠାରୁ ଅଧିକ ଭଲପାଆନ୍ତି । ତାଙ୍କୁ ଛାଡ଼ି ସେ ଚିରଦିନ ପାଇଁ ଚାଲିଯିବେ । ଏ କଥା ତାଙ୍କୁ ଭଲ ଲାଗିଲା ନାହିଁ । ମନ ତାଙ୍କର ଘୋଳେଇ ଘାଣ୍ଟି ହେଲା । ସେ ଜାଣନ୍ତି—ବ୍ରାହାମ୍ ଗୋର ତାଙ୍କୁ ଖୁବ୍ ଭଲପାଆନ୍ତି । ନ ଦେଖିଲେ ସେ ପାଗଳ ହୋଇଯିବେ ।

ସାହାପସନ୍ଦ କିନ୍ତୁ ଉପାୟହୀନ । ପାରୀଟିଏ ହୋଇ ସେ ଆଉ କେତେବେଳ ଯାଏ କେଉଁଠ ରହିବେ, ଜାଣିପାରିଲେନାହିଁ । କେଉଁଠି ବସିଗଲେ ପୁଣି ରୂପ ପାଇଯିବେ । ଯେ ବି ଭାରି ବିପଦ । ସେଇ ଆଶଙ୍କାରେ ସେ ଥରଉଠିଲେ । ସେ ଛାଣନ୍ତି ବୁଢ଼ୀଟି ଅନ୍ଧ । ତାଉପରପଟେ ଉଡ଼ିବୁଲିଲେ ସେ ଜାଣିପାରିବନାହିଁ । ସେ ବୁଢ଼ୀ ଘରପାଖେ ରହି ଦେଉ ଦେଉ କହିଲେ "ମୋ ର ଘର ଇମାଲଡ଼ ପାହାଡ଼ ଉପରେ । ମୁଁ ସେଠାକୁ ଯାଉଛି ।" ଏତକ କହିସାରି ପାରୀଟି ଆକାଶରେ ମିଶିଗଲା ।

ସନ୍ଧ୍ୟାବେଳକୁ ବ୍ରାହାମ୍ ଗୋର ଶିକାରରୁ ଫେରିଲେ । ପ୍ରତିଦିନ ଶିଢ଼ି ପାଖରେ ସାହାପସନ୍ଦ ତାଙ୍କୁ ଅପେକ୍ଷା କରିଥାଆନ୍ତି । କିନ୍ତୁ ଆଜିର ବ୍ୟତିକ୍ରମ ତାଙ୍କୁ ଖୁବ୍ ବାଧିଲା । ଶିବିରକୁ ସେ ଗଲେ । ସେଠି ସାହାପସନ୍ଦକୁ ଦେଖିଲେନାହିଁ । ମେ ତାଙ୍କୁ ଏଣେ ତେଣେ ଖୁବ୍ ଖୋଜିଲେ । କିନ୍ତୁ କେଉଁଠାରେ ପାଇଲେନାହିଁ ।

ବ୍ରାହାମ୍ ଗୋର ଶିକାଘାଟିକୁ ଏ ବିଷୟରେ କହିଲେ । ଅନ୍ଧୁଣୀ ବୁଢ଼ୀ ଛଡ଼ା ସେଠିତ କେହି ନାହାନ୍ତି । ତାକୁ ଏକଥା ପଚରାଗଲା । ବୁଢ଼ୀ ତ ଏକଥା ଶୁଣି ଅବାକ୍ । ଶିବିରରେ ଯେ ରାଜପୁତ୍ର ଓ ତା ସ୍ତ୍ରୀ ରହୁଥିଲେ ସେ କଥାଶୁଣି ବୁଢ଼ୀ ଆଶ୍ଚର୍ଯ୍ୟ । ତଥାପି ସେ କହିଲା, ରାଜାଙ୍କ ଲୋକମାନେ ଆସି ତାକୁ ଶିବିରରେ ରହୁଥିବା ସ୍ତ୍ରୀ ଲୋକଟି କଥା ପଚାରିଲେ । ସେ ତାଙ୍କୁ ଘର ଦେଖିବାକୁ କହିଦେଲା । ଶେଷରେ ବୁଢ଼ୀ କହିଲା "ମୋର ମନେ ହେଉଛି କିଏ ଜଣେ ଫୁସ୍-ଫୁସ୍ କରି ମୋ କାନରେ କହିଗଲା—ମୋର ବାପଘର ଇମାଲଡ଼ି ପାହାଡ଼ରେ । ମୁଁ ସେଠାକୁ ଚାଲିଯାଉଛି ।"

ସେଇ କଥା ଯେ ସାହାପସନ୍ଦଙ୍କର । ଏହା ବୁଝିବାକୁ ବ୍ରାହାମ୍-ଗୋରଙ୍କର ଡେରି ହେଲାନାହିଁ । ଇମାଲଡ଼ି ପାହାଡ଼ କଥା ଶୁଣି ସେ ଟିକିଏ ଆଶ୍ୱସ୍ତ ହେଲେ । ପରମୁହୂର୍ତ୍ତରେ ତାଂକୁ ଚାରିଆଡ଼ ଅନ୍ଧାର ଦେଖାଗଲା ।

ଇମାଲଡ଼ି ପାହାଡ଼ ବିଷୟରେ ସେ ପୁରାପୁରି ଅଜ୍ଞ । ସାହାପସନ୍ଦକୁ ସେଠୁ ଖୋଜି ବାହାର କରିବା ତାଙ୍କ ପକ୍ଷେ ସମ୍ପୂର୍ଣ୍ଣ ଅସମ୍ଭବ । ବେଳକୁ ବେଳ ସେ ନିଜକୁ ଅସହାୟ ମନେକଲେ । ନିଜେ ତଳେ ଲୋଟି କାଇଁ କାଇଁ ହୋଇ କାନ୍ଦିବାକୁ ଲାଗିଲେ । ଖାଇବା ପିଇବା ତ ଦୂରର କଥା । ସେଠୁ ମୋଟେ ଉଠିଲେ ନାହିଁ । ବାରମ୍ବାର ମୋର 'ପ୍ରିୟ ସାହାପସନ୍ଦ' ବୋଲି ଚିତ୍କାର

କରୁଥିଲେ ।

ଶିକାରୀଟି ବ୍ରାହାମ୍‌ଗୋରଙ୍କର ଏ ଅବସ୍ଥା ଦେଖି ଦୁଃଖିତ । ବ୍ୟଥିତ । ସେ ତାଙ୍କୁ ବହୁତ ବୁଝାଇଲା । କିନ୍ତୁ ସବୁ ବୃଥା । ସେ ବିଫଳ ହୋଇ ଫେରିଗଲା ।

ସମସ୍ତ ସର୍ବସୈବମହର । ବ୍ରାହାମ୍‌ଗୋର କିଛି ସମୟ ପରେ ଠିକେ ପ୍ରକୃତିସ୍ଥ ହେଲେ । ତାଙ୍କର ରାଜା ଜାସଦ୍ରୁଲ୍ ଦେଇଥିବା ବାଳ କଥା ମନେପଡ଼ିଲା । ସେ ଧୀରେ ଧୀରେ ବାଳଟିକୁ ଆଣି ନିଆଁରେ ପକାଇଦେଲେ । ତାହା ପୋଡ଼ିବାକୁ ଆରମ୍ଭ କରିବା ମାତ୍ରେ ରାଜା ଜାସଦ୍ରୁଲ୍ ଆସି ଉପସ୍ଥିତ ହେଲେ ।

ଜାସଦ୍ରୁଲଙ୍କୁ ଦେଖି ରାଜପୁତ୍ରଙ୍କର ସାହସ ବଢ଼ିଗଲା । ଆପେ ଆପେ ଆଖିରୁ ଲୁହ ଶୁଖିଗଲାଣି । ରାଜା ଜାସଦ୍ରୁଲ୍ କିଛି ଆଉ ନକହି ସିଧା ପଚାରିଲେ "କଣ ଦରକାର ? କାହିଁକି ଡାକିଲ ?"

"ମୋତେ ଇମାଲ୍‌ଡ଼ା ପାହାଡ଼କୁ ରାସ୍ତା ଦେଖେଇ ଦିଅନ୍ତୁ ।" ଏହାହିଁ ଥିଲା ବ୍ରାହାମ୍‌ଗୋରଙ୍କର ସଂକ୍ଷିପ୍ତ ଉତ୍ତର ।

ରାଜା ଜାସଦ୍ରୁଲ୍ ଦୟାଳୁ । ସ୍ନେହୀ । ବ୍ରାହାମ୍‌ଗୋରଙ୍କ ଦୁଃଖରେ ସେ ବି ବିଚଳିତ । ତଥାପି ସେ ଅସମ୍ମତି ଜଣାଇ ମୁଣ୍ଡ ହଲାଇଲେ । କହିଲେ—"ମଣିଷ ପକ୍ଷେ ତାର ଜୀବନ ନେଇ ସେଠାରେ ପହଞ୍ଚିବା ଅସମ୍ଭବ । ମୋ କଥା ମାନ । ଅତୀତକୁ ଭୁଲିଯାଅ । ରାଜପୁତ୍ର ତମେ । ସାହସ ଓ ଧୈର୍ଯ୍ୟର ସହିତ ନୂଆ ସଂସାର ଗଢ଼ିବାର ଉଦ୍ୟମ କର । ମୋ ପାଖରେ ଆସ । ମୁଁ ସବୁ ବ୍ୟବସ୍ଥା କରିଦେବି ।"

ରାଜପୁତ୍ର ଏ ଉତ୍ତରରେ ସୁଖୀ ହୋଇପାରିଲେ ନାହିଁ । ମୁହଁ ତାଙ୍କର କଳାକାଠ ପଡ଼ିଗଲା । ସେ କହିଲେ—"ମୋର ଏଇ ଜୀବନ ସହିତ ସାହାପସନ୍ଦ ଓତଃପ୍ରୋତ ଭାବରେ ଜଡ଼ିତ । ତା

ବ୍ୟକ୍ତିରେକେ ଏ ଜୀବନ ବ୍ୟର୍ଥ । ଏଇ ବ୍ୟର୍ଥତାରେ ବଞ୍ଚି ରହିବା ଲାଭ ନାହିଁ । ବରଂ ମରିଯିବା ଭଲ । ସାହାପସନ୍ଦଙ୍କୁ ଖୋଜି ଖୋଜି ଯଦି ମୋର ମୃତ୍ୟୁ ହୁଏ, ଏ ଜୀବନ ସାର୍ଥକ ହେଲା ବୋଲି ଅନ୍ତତଃ ଭାବିବି ।"

ରାଜକୁମାର ସାହାପସନ୍ଦଙ୍କ ପ୍ରତି ଖୁବ୍ ବିଶ୍ୱସ୍ତ । ଏଥିରେ ରାଜା ଜାସଦ୍ରୁଲ୍ଙ୍କର ସନ୍ଦେହ ରହିଲା ନାହିଁ । ସେ ମନେ ମନେ ବ୍ରାହାମ୍‌ଗୋରଙ୍କୁ ଖୁବ୍ ପ୍ରଶଂସା କଲେ । ଯାହା ତାଙ୍କ ହାରା ସମ୍ଭବପର, ସେ ପ୍ରକାର ସାହାଯ୍ୟ ସେ କରିବେ ବୋଲି ପ୍ରତିଶ୍ରୁତି ଦେଲେ ।

ରାଜା ଜାସଦ୍ରୁଲ୍ ରାଜପୁତ୍ର ବ୍ରାହାମ୍‌ଗୋର୍‌ଙ୍କୁ ସାଥୀରେ ଧରି ଅସୁର ରାଜ୍ୟକୁ ଯାତ୍ରା କଲେ । ସେଠାରେ ପହଞ୍ଚି ସେ ବ୍ରାହାମ୍‌ଗୋରଙ୍କୁ ଗୋଟିଏ କୁହୁକ ଦଣ୍ଡ ଧରାଇଦେଇ କହିଲେ— "ଏହାକୁ ଧରିଥିବା ପର୍ଯ୍ୟନ୍ତ କୌଣସି ବିପଦ ତମର ପଡ଼ିବ ନାହିଁ । କିନ୍ତୁ ଦିନ କ'ଣ ରାତି କ'ଣ ସବୁବେଳେ ଏହାକୁ ହାତରେ ଧରିଥିବ । ଏହାକୁ ଧରି ଅସୁର ରାଜା 'ନାନକର୍ଗୃନ୍ଦ' ଘରପର୍ଯ୍ୟନ୍ତ ନିର୍ଭୟରେ ଚାଲିଯିବ । ସେ ମୋ ଭାଇ । ତାଙ୍କୁ ସବୁକଥା କହିବ । ସେ ତମକୁ ସାହାଯ୍ୟ କରିବେ । ତାଙ୍କ ସାହାଯ୍ୟରେ ତମେ ହୁଏତ ଇମାଲଢ଼ ପାହାଡ଼ରେ ପହଞ୍ଚିଯିବ ।"

ବ୍ରାହାମ୍‌ଗୋର୍ ଆଉ ଡେରି କଲେ ନାହିଁ । ସାଙ୍ଗେ ସାଙ୍ଗେ କୁହୁକ ଦଣ୍ଡଟି ହାତରେ ଧରି ବାହାରି ପଡ଼ିଲେ । ଅସୁର ରାଜ୍ୟ । ଭୟଙ୍କର ସ୍ଥାନ । ରୂପ ସମସ୍ତଙ୍କର ବିକଟାଳ । ସମସ୍ତେ ତାଙ୍କୁ ଖାଇବାକୁ ଆଗ୍ରହୀ । ବାଟରେ ମଧ୍ୟ ବହୁ ବିପତ୍ତି ଆସିଚାଲି । ହେଲେ, କୁହୁକ ଦଣ୍ଡ ଯୋଗୁ ତାଙ୍କୁ କିଛି ଜଣା ବି ପଡ଼ିଲା ନାହିଁ । ଶେଷକୁ ସେ 'ନାନକର୍ଗୃନ୍ଦ' ଘରେ ପହଞ୍ଚିଲେ ।

ଅସୁରମାନେ ଥରେ ଶୋଇଲେ ବାରବର୍ଷ ପରେ ଉଠନ୍ତି । ଏହା ତାଙ୍କର ଅଭ୍ୟାସ । ନାନକଗୃନ୍ଦ ଜଗାଇଥିଲା । ବାରବର୍ଷ ପରେ ଏବେ ସେ ଉଠୁଛି । ସେତେବେଳକୁ ତାଙ୍କୁ ଘୋର ଭୋକ । ପେଟ ତାର ଜଳୁଥାଏ । ବାହ୍ରାମଗୋରଙ୍କୁ ଦେଖି ପାଟିରୁ ତାର ଲାଳ ବୋହିଲା । ଭାବିଲା ତାର ଭାଗ୍ୟ ଭଲ । ନିଦ ଭାଙ୍ଗୁ ଭାଙ୍ଗୁ ଉତ୍ତମ ଜଳଖିଆ ମିଳିଗଲା ।

ପରମୁହୂର୍ତ୍ତରେ ରାଜକୁମାରଙ୍କ ହାତର କୁହ୍ମକଦଣ୍ଡ ଉପରେ ତାର ନଜର ପଡ଼ିଗଲା । ମନକଥା ମନରେ ଗୁପ୍ତ ରଖି ସେ ରାଜକୁମାରଙ୍କର ଆଗମନର କାରଣ ପଚାରିଲା । ବାହ୍ରାମ୍‌ଗୋର୍ ତାଙ୍କୁ ସବୁକଥା କହିଲେ । ସବୁ ଶୁଣି ସାରି ସେ ମୁଣ୍ଡ ହଲାଇ କହିଲା "ପୁଅରେ ! ତୁ କେବେହେଲେ ଜୀବନ ଧରି ସେଠାରେ ପହଞ୍ଚି ପାରିବୁ ନାହିଁ । ମୋ ବଡ଼ କଥା ମାନ । ଯାହା ଘଟି ଯାଇଛି, ତା ଭୁଲିଯା । ପୁଣି ନୂତନ ଜୀବନ ଆରମ୍ଭ କର ।"

ରାଜପୁତ୍ର ସେପରୁ ମନ ଅଟଳ । ସେ ଉତ୍ତର ଦେଲେ—"ମୁଁ ଯଦି ସାହାପସନ୍ଦଙ୍କୁ ନପାଏ, ମୋର ଏ ଜୀବନ ରଖି ଲାଭ ନାହିଁ । କିନ୍ତୁ ତାଙ୍କୁ ଖୋଜି ଖୋଜି ମୁଁ ଯଦି ମରେ, ମୋର ଜୀବନ ସାର୍ଥକ ହେଲା ବୋଲି ଭାବିବି ।"

ରାଜପୁତ୍ରଙ୍କ ଉତ୍ତରରେ ନାନକଗୃନ୍ଦ ସମ୍ମିଭୂତ । ରାଜପୁତ୍ରଙ୍କ ଏକନିଷ୍ଠତାରେ ସେ ମୁଗ୍ଧ ସନ୍ତୁଷ୍ଟ । ବାହ୍ରାମ୍‌ଗୋରଙ୍କୁ ଆଣ୍ଟିମୋନ ପାଉଡ଼ରର ଭରା ବାକ୍‌ସଟିଏ ଦେଇ କହିଲା—"ଏଥିରେ ଥିବା ପାଉଡ଼ରର ଗୁଣ ଅଦ୍ଭୁତ । ଏହାକୁ ଆଖି ପତାରେ ଲଗାଇ ଇଚ୍ଛାକଲେ, ଦୂର ଜିନିଷ ପାଖକୁ ଚାଲିଆସି । ଆଉ ପାଖ ଜିନିଷ ଦୂରେଇ ଯିବ । ଏହାକୁ ନେଇ ବିଖ୍ୟାତ ଅସୁର ସଫେଦ୍ ଦେବ ପର୍ଯ୍ୟନ୍ତ ଚାଲିଯାଅ । ସେ ମୋର ଭାଇ । ଏଇ ଅସୁର ରାଜ୍ୟରେ

ସେ ବି ରହେ । ତାର ପରାମର୍ଶ ନିଅ । ସେ କିନ୍ତୁ କେବଳ ତମକୁ ସାହାଯ୍ୟ କରିପାରିବ ।"

ସେହି ମୁହୂର୍ତ୍ତରେ ରାଜପୁତ୍ର, ସଫେଦ୍ ଘରକୁ ବାହାରିଲେ । ପ୍ରତି ପଦକ୍ଷେପରେ ବିପଦ । କିନ୍ତୁ ତାଂକ ହାତରେ ତ କୁହୁକ ଦଣ୍ଡ । ଅତଏବ ତେଣୁ ବାଟରେ ବିପଦ କିଛି ପଡ଼ିଲା ନାହିଁ । ଶେଷରେ ସେ ସଫେଦ୍ଙ୍କ ଘରେ ନିର୍ବିଘ୍ନରେ ପହଞ୍ଚିଗଲେ ।

କୁହୁକଦଣ୍ଡ ଓ ଆର୍ଣ୍ଣିମୋନ୍ ପାଉଡ଼ରର ବାକ୍ସ ସହିତ ରାଜପୁତ୍ରଙ୍କୁ ଦେଖି ସଫେଦ ଆଶ୍ଚର୍ଯ୍ୟ ହୋଇଗଲା । ଜାଣିଲା—ଏ ଲୋକଙ୍କୁ ତାର ଭାଇମାନେ ପଠେଇଛନ୍ତି । ତେଣୁ ସେ ରାଜପୁତ୍ରଙ୍କୁ ସମ୍ବର୍ଦ୍ଧନା ଜଣାଇଲା । ବ୍ରାହ୍ମଣଠାରୁ ତାଙ୍କୁ ସମସ୍ତ ଘଟଣା ବର୍ଣ୍ଣନା କଲେ ।

ସଫେଦ୍ ତାର ସାନ ଦୁଇଭାଇ ପରି ଦୟାଳୁ । ତଥାପି ମୁଣ୍ଡ ହଲାଇ କହିଲା—"ତୁ କେବେହେଲେ ଏ ପ୍ରାଣ ନେଇ ଇମାଲୟ ପାହାଡ଼ରେ ପହଞ୍ଚି ପାରିବୁ ନାହିଁ । ପୁଅରେ ! ମୋ କଥା ମାନ । ପୁରୁଣା କଥା ମନରୁ ପୋଛିଦେ । ନୂଆ ସଂସାର କର । ଆମେ ତିନିଭାଇ ଅଛୁ । ଏ ସଂସାରରେ ତୋର କିଛି ଅଭାବ କି ଅସୁବିଧା ହେବ ନାହିଁ ।"

ରାଜକୁମାର ତଥାପି ଅବିଚଳିତ । ସେ ସାହାପସନ୍ଦଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ । ସେ କହିଲେ "ମୋର ଜୀବନର ସାହାପସନ୍ଦ ଏକ ଅବିଚ୍ଛେଦ୍ୟ ଅଙ୍ଗ । ତାଙ୍କ ବ୍ୟତିରେକେ ଏ ଜୀବନ ନିରର୍ଥକ । ମୃତ୍ୟୁ ସଙ୍ଗେ ସମାନ । ତାଙ୍କୁ ଖୋଜି ଖୋଜି ପ୍ରାଣ ଗଲେ ଏ ଜୀବନ ସାର୍ଥକ ହେବ ।"

ଅସୁରଟି ରାଜପୁତ୍ରଙ୍କର ଏକନିଷ୍ଠତା ଦେଖି ମୁଗ୍ଧ । ବିସ୍ମିତ । ସନ୍ତୁଷ୍ଟ । ମନରେ ତାର ଯୁବରାଜ ପ୍ରତି ଅନୁକମ୍ପା । ସେ କହିଲା—"ମୁଁ ଯାହା ଦେଖୁଛି, ତୁ ଖୁବ୍ ସାହସୀ । ମୋ ଦ୍ୱାରା ଯାହା ସମ୍ଭବ, ମୁଁ ତତେ ସାହାଯ୍ୟ କରିବି ।'

ସଫେଦ୍ ଗୋଟିଏ ଟୋପି ଆଣି ବ୍ରାହାମ୍‌ଗୋରଙ୍କୁ ଦେଲା । ତାପରେ କହିଲା—"ଏ ଟୋପିର ଗୁଣ ଅଦ୍ଭୁତ । ଯେ ଏହାକୁ ପିନ୍ଧିବ, ସେ ଅଦୃଶ୍ୟ ହୋଇଯିବ । ତୁ ଉତ୍ତର ଦିଗକୁ ଯିବୁ । କିଛି ବାଟ ଗଲାପରେ ଦେଖିବୁ, କାହିଁ ଦୂର ଦିଗ୍‌ବଳୟ ଭିତରେ ଏକ ସୁନ୍ଦର ପାହାଡ଼ ମିଶିଯାଇଛି । ସେଇଟି ହେଉଛି ଇମାଲଡ଼ ପାହାଡ଼ । ସେ ବହୁତ ଦୂର । ଯାନ ବାହନରେ ଗଲେ ଜୀବନ ବିତିଜିବ—ସେଠି ପହଞ୍ଚ ହେବ ନାହିଁ । ତାଛଡ଼ା ଏହା ମନ୍ତ୍ର ପ୍ରଭାବିତ । ଏଥିରେ ଯେତିକି ଚଢ଼ିବ, ଏହାର ଉଚ୍ଚତା ସେତିକି ସେତିକି ବଢ଼ିଯିବ । ପାହାଡ଼ ଶିଖରରେ ଇମାଲଡ଼ ସହର । ସେଠି ମଧ୍ୟ ପହଞ୍ଚିବା ସମ୍ଭବପର ନୁହେଁ । ସେଇଟି ପଶ୍ଚିମରାଇଜ । ତୁ ଗୋଟିଏ କାମ କରିବୁ । ପାହାଡ଼ଟି ଦେଖିଲାମାତ୍ରେ, ଆଣ୍ଟିମୋନ ପାଉଡ଼ରକୁ ଆଖିରେ ଲଗାଇ ଦେବୁ । ପାହାଡ଼ ଉପର ଇମାଲଡ଼ ସହରକୁ ମନାସିବୁ । ଅଳ୍ପ ସମୟ ପରେ ତୁ ସେଇ ସହର ପାଖରେ ପହଞ୍ଚିଯିବୁ । ଅଦୃଶ୍ୟ ଟୋପି ପିନ୍ଧି ସେଇ ସହରରେ ବୁଲି ରାଜକୁମାରୀଙ୍କୁ ଠାବ କରିବୁ ।"

ରାଜପୁତ୍ରଙ୍କ ମନରେ ଅଶେଷ ଆନନ୍ଦ । ଦେହରେ ଫୁର୍ତ୍ତି ବି ଅସୀମ । ସଫେଦ୍‌ଠାରୁ ବିଦାୟ ନେଇ ସେ ଉତ୍ତର ଦିଗକୁ ବାହାରି ପଡ଼ିଲେ । କିଛି ବାଟ ଚାଲି ପରେ ଦିଗ୍‌ବଳୟରେ ଇମାଲଡ଼ ପାହାଡ଼ ଦେଖାଗଲା । ସଫେଦ୍‌ଙ୍କ କହିବାନୁସାରେ ବ୍ରାହାମ୍‌ଗୋର ଆଖିରେ ପାଉଡ଼ର ଲଗାଇଲେ । ଆଶ୍ଚର୍ଯ୍ୟ । ମନାସିବା ମାତ୍ରେ ସେ ଇମାଲ୍‌ଡ଼ ସହର ଉପକଣ୍ଠରେ ପହଞ୍ଚିଗଲେ ।

ଇମାଲଡ଼ ସହରର ଦୃଶ୍ୟ ଅତ୍ୟନ୍ତ ମନୋହର । ସୁନ୍ଦର । ସତେ କି ଗୋଟିଏ ମୁକ୍ତାରେ ଗଢ଼ା । ରାଜପୁତ୍ରଙ୍କ ମନରେ କେବଳ ରାଜକୁମାରୀ ସାହାପସନ୍ଦଙ୍କୁ ପାଇବାର ଚିନ୍ତା । ତେଣୁ ସହରର ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ତାଙ୍କୁ ବେଳ ନ ଥିଲା । ସେ ଅଦୃଶ୍ୟ ଟୋପିଟି ପିନ୍ଧି ରାଜକୁମାରୀଙ୍କ ଅନୁସନ୍ଧାନରେ ସହରସାରା

ବୁଲିବାରେ ଲାଗିଗଲେ । ସାରା ସହର ବୁଲି ସରିଲା । ହେଲେ, ରାଜକୁମାରୀଙ୍କର ପତ୍ତା କେଉଁଠାରେ ବି ମିଳିଲା ନାହିଁ ।

ସାହାପସନ୍ଦ ମହାରାଜଙ୍କରେ ରହି ବି ବ୍ରାହାମ୍‌ଗୋରଙ୍କୁ ଭୁଲି ପାରିଲେ ନାହିଁ । ସବୁବେଳେ ସେ ତାଙ୍କ କଥା ଗପନ୍ତି । ଏକଥା ରାଜାଙ୍କ କାନକୁ ଗଲା । ସାହାପସନ୍ଦ ସୁବିଧା ପାଇଲେ, ପୁଣି ସେ ରାଜପୁତ୍ର ପାଖକୁ ପଳାଇବ—ଏଥିରେ ରାଜାଙ୍କର ସନ୍ଦେହ ନ ଥିଲା ।

ରାଜା ସାତ ପାଚଶ ଘେରା ଏକ ଜେଲଖାନାରେ ଝିଅକୁ ରଖିଦେଲେ । କହିଲେ—"ଯଦି ତୋର ସ୍ୱାମୀ ଏଠାକୁ ଫେରେ, ତାହାହେଲେ ସବୁଠାରୁ ଭଲ । ତା ସାଥିରେ ତୋତେ ରହିବାକୁ ଦିଆଯିବ । କିନ୍ତୁ ତତେ କେବେହେଲେ ତା ପାଖକୁ ପଳେଇବାକୁ ସୁବିଧା ଦିଆଯିବ ନାହିଁ ।"

ଇମାଲତ୍‌ ପାହାଡ଼କୁ କୌଣସି ମଣିଷ ଆସିପାରିବ ନାହିଁ, ସେ ବିଷୟରେ ସାହାପସନ୍ଦ ଦୃଢ଼ । ସେଥିପାଇଁ ବ୍ରାହାମ୍‌ଗୋରଙ୍କ କଥା ମନେ ପକାଇ ସେ ସବୁବେଳେ କାନ୍ଦନ୍ତି ।

ରାଜପୁତ୍ର ସାରା ସହରର ଗଳି କନ୍ଦି କିଛି ବାକି ରଖିଲେ ନାହିଁ । ସବୁଠି ସେ ପହଞ୍ଚିଗଲେ । ସବୁ ଗପର ଆସର ଜାଗାରେ ଠିଆ ହୋଇ ସେମାନଙ୍କ କଥା ଶୁଣିଲେ । ହେଲେ, ସାହାପସନ୍ଦଙ୍କ ବିଷୟରେ କଥା ପଦେ ହେଲେ ତାଙ୍କ କାନରେ ପଡ଼ିଲା ନାହିଁ । ସେ ବ୍ୟସ୍ତବ୍ୟସ୍ତ ହୋଇପଡ଼ିଲେଣି । ଏତେ ପରିଶ୍ରମ ଆଉ କଷ୍ଟ କ'ଣ ପାଣିରେ ପଡ଼ିଯିବ ? ତାହାହିଁ ତାଙ୍କର ଚିନ୍ତା ।

ଏବେ ତାଙ୍କର ବୁଲିବା ସେ ଛାଡ଼ି ଦେଲେ । ସେ ରାଜଉଆସ ପାଖରେ ବସି ସବୁ ଲୋକଙ୍କର ଯିବାଆସିବାକୁ ଲକ୍ଷ୍ୟ କରନ୍ତି । ସେ ଦେଖନ୍ତି—ପ୍ରତିଦିନର ଉଆସରୁ ବୁଢ଼ୀଟିଏ ସୁଖାଦ୍ୟ ପସରା ଧରି ଜେଲ ପାଖକୁ ଯାଏ । ସେଠି ଜେଲ ପ୍ରହରୀ କବାଟ ଖୋଲି ଦିଅନ୍ତି । ସେ ଭିତରକୁ ଯାଏ । କିଛି ସମୟ ପରେ ଖାଲି ପାତ୍ର ଧରି

ସେ ଫେର୍ ଆସେ । ଏକେତ ସୁଖାଦ୍ୟ ଜେଲକୁ ଯିବା ଏକ ଅସଙ୍ଗତ କଥା । ତା ପୁଣି ରାଜଉଆସରୁ । ଏସବୁ କଥା ତାଙ୍କୁ କେମିତି କେମିତି ଲାଗିଲା । ପ୍ରକୃତ ଘଟଣା ଜାଣିବା ପାଇଁ ସେ ଇଚ୍ଛୁକ । ତେଣେ ସେ ବୁଢ଼ୀ ପଛେ ପଛେ ଗଲେ । ଟୋପିଟି ମୁଣ୍ଡରେ ଥାଏ ।

ବୁଢ଼ୀଟି ଜେଲ ଫାଟକ ପାଖରେ ପହଞ୍ଚିବା ମାତ୍ରେ ଜେଲ ପ୍ରହରୀ କବାଟ ଖୋଲି ଦେଲା । ବୁଢ଼ୀ ଆଗେ ଆଗେ । ପଛରେ ବ୍ରାହ୍ମଣ୍‌ଗୋର । ସେମାନେ ଜେଲଭିତରେ ପଶିବା ପରେ ପଛପଟୁ କବାଟ ପଡ଼ିଲା । ଦ୍ୱିତୀୟ ପ୍ରାଚୀରର କବାଟ ଖୋଲି ହେଲା । ବୁଢ଼ୀ ପଛରେ ବ୍ରାହ୍ମଣଗୋର ପ୍ରାଚୀର ଡେଇଁ ଭିତରକୁ ଯିବା-ମାତ୍ରେ, ତାଲା ପଡ଼ିଗଲା । ଏହିପରି ଭାବରେ ଆଉ ପାଞ୍ଚୋଟି କବାଟ ଗୋଟିଏ ପରେ ଗୋଟିଏ ଖୋଲି ହେଲା ଏବଂ ସେମାନେ ଯିବାମାତ୍ରେ ତାଙ୍କ ପଛେ ପଛେ ତାଲା ବି ପଡ଼ିଲା । ଶେଷରେ ସେମାନେ ଜେଲ ଭିତରେ ପହଞ୍ଚିଗଲେ ।

ସେଠି ଯାହା ବ୍ରାହ୍ମଣ୍‌ଗୋର ଦେଖିଲେ, ସେଥିରେ ତାଙ୍କ ଆଖି ଖୋସି ହୋଇଗଲା । ଜେଲ ଭିତରେ ସାହାପସନ୍ଦ ବସିଛନ୍ତି । ମୁଣ୍ଡକୁ ତଳକୁ କରି । ଆଖିରୁ ତାଙ୍କର ଧାର ଧାର ହୋଇ ଲୁହ ବୋହି ଯାଉଥାଏ । ତାଙ୍କର ପୂର୍ବଶ୍ରୀ ଆଉ ନାହିଁ । ଶୁଖିକରି କଣ୍ଟା ହୋଇଯାଇଛନ୍ତି । ତାଙ୍କର ଏ ଅବସ୍ଥା ଦେଖି ବ୍ରାହ୍ମଣ୍‌ଗୋର ଭାବିଲେ—ସାହାପସନ୍ଦ ପ୍ରକୃତରେ ତାଙ୍କ ପ୍ରତି ବିଶ୍ୱସ୍ତ । ତାଙ୍କର ଇଚ୍ଛା ହେଲା, ତାଙ୍କର ପାଦଦେଶରେ ନିଜକୁ ଲମ୍ବାଇ ଦେବାକୁ । କିନ୍ତୁ ସେ ଆଗ୍ରହକୁ ସେ ଚାପି ରଖିଲେ । କାରଣ ସେ ତ ଅଦୃଶ୍ୟ । ସେ କ'ଣ କଲେ, ସେ କଥା ସାହାପସନ୍ଦ ଜାଣିପାରିବ ନାହିଁ । ଦ୍ୱିତୀୟରେ ବୁଢ଼ୀଟି ଅଛି । ସେ କିଛି ସୁରାକ ପାଇଲେ, ବାହାରେ ପ୍ରକାଶ କରିଦେବ । କ'ଣ ତାପରେ ହେବ, କିଛି କହି ହେବ ନାହିଁ । ତେଣୁ ବୁଢ଼ୀ ଯିବା ପର୍ଯ୍ୟନ୍ତ ସେ ସେଠି ଅପେକ୍ଷା କଲେ ।

କୁନ୍ଦୀଟି ସୁଖାଦ୍ୟ ଭର୍ତ୍ତି ଥାଳଟିକୁ ସାହାପସନ୍ଦ ଆଗରେ ଥୋଇଦେଲା । ଖାଲି ଥାଳଟି ଧରି ସେ ପଦାକୁ ଚାଲିଆସିଲା । ତାପରେ ଗୋଟିଏ ପରେ ଗୋଟିଏ ଦରଜା ବନ୍ଦ ହେବାର ଶବ୍ଦ । ଯେତେବେଳେ ଚଉଦ ଥର ଶବ୍ଦ ସରିଗଲା, ରାଜପୁତ୍ର ଆଶ୍ୱସ୍ତରେ ଦୀର୍ଘ ନିଶ୍ୱାସ ପକାଇଲେ ।

ଜେଲ ଭିତରେ ସାହାପସନ୍ଦ ଏକାକୀ । ଏକଥା ବ୍ରହ୍ମାମ୍‌ଗୋର ଜେଲ ଭିତର ଭଲକରି ବୁଲି ଦେଖି ଜାଣିଲେ । ତାଙ୍କର ଆଉ ଭୟ ନାହିଁ । ସେ ସାହାପସନ୍ଦ ପାଖରେ ବସି ପଡ଼ିଲେ ।

ପେଟ ଥିଲେ ଭୋକ ଅଛି । ସେ ଭୋକ ମାରାତ୍ମକ । ସବୁ ଭୁଲି ହେବ, କିନ୍ତୁ ଭୋକକୁ ଭୁଲି ହେବ ନାହିଁ । କିଛି ସମୟ ବସିଲା ପରେ ସାହାପସନ୍ଦ ଖାଇବାକୁ ଆରମ୍ଭ କଲେ । ସବୁବେଳେ ସାହାପସନ୍ଦ ପାଇଁ ରାଜକୁମାର ଚିନ୍ତିତ । ସେ ଆସିଲା ଦିନୁ ବ୍ରାହ୍ମାମ୍‌ଗୋର ମନ-ବୋଧ କରି ଦିନଟା ଖାଇନାହାନ୍ତି । ଆଜି ତ ମନ ତାଙ୍କର ଆନନ୍ଦ । ସୁଖାଦ୍ୟ ଦେଖି ଲୋଭ ସେ ସମ୍ବରଣ କରି ପାରିଲେ ନାହିଁ । ସାହାପସନ୍ଦ ଖାଇବା ଆରମ୍ଭ କରିବା ମାତ୍ରେ ସେ ତରତର କରି ଖାଇବାକୁ ଲାଗିପଡ଼ିଲେ । ଏଥର ଥାଳି ସଫା ।

ଥାଳିରୁ ଖାଦ୍ୟ ସବୁ ସରିଯିବାରୁ ସାହାପସନ୍ଦ ବ୍ୟସ୍ତ ହୋଇ-ଉଠିଲେ । ଆଶ୍ଚର୍ଯ୍ୟ । ସେ ଏକୁଟିଆ ଜେଲରେ ଅଛନ୍ତି । ଅଥଚ ସେ ନ ଖାଇ ବି ଖାଦ୍ୟ ସରିଯାଉଛି । ତାଙ୍କର ଭୟ ହେଲା । ସେ ଚିତ୍କାର କରି ଉଠିଲେ ।

ବ୍ରାହ୍ମାମ୍‌ଗୋର୍ ଆସ୍ତେ ଆସ୍ତେ ତାଙ୍କ ଅଦୃଶ୍ୟ ଟୋପିକୁ ଆଖି ପତା ଉପରକୁ ଉଠାଇ ଆଣିଲେ । ଏଥର ସେ ଆଉ ସମ୍ପୂର୍ଣ୍ଣ ଅଦୃଶ୍ୟ ନୁହନ୍ତି । ଝାପସା ଝାପ୍‌ସା ହୋଇ ଦେଖାଯାଉଥାଆନ୍ତି । ତାଙ୍କୁ ଦେଖି ସାହାପସନ୍ଦଙ୍କର ମନେ ହେଲା, ସେ ବ୍ରାହ୍ମାମ୍‌ଗୋରଙ୍କ ଭୂତକୁ ଦେଖୁଛନ୍ତି । ତେଣୁ ବ୍ରାହ୍ମମ୍‌ଗୋରଙ୍କ ନାଁ ଧରି ସେ ଖୁବ୍ ଜୋରରେ କାନ୍ଦି ଉଠିଲେ ।

ବ୍ରାହାମ୍‌ଗୋର ଏହା ଦେଖି ତାଙ୍କ ଟୋପିଟିକୁ ଆସ୍ତେ ଆସ୍ତେ ଉପରକୁ ଉଠାଇଲେ । ଅସ୍ପଷ୍ଟ ସ୍ତ୍ରୀଲୋକରୁ ସେ ସ୍ପଷ୍ଟ ହୋଇଉଠିଲେ । ତାଙ୍କର ରକ୍ତମାଂସ ଗଢ଼ା ଶରୀର ପରିଷ୍କାର ହୋଇ ଦେଖାଗଲା । ହସି ହସି ସାହାପସନ୍ଦକୁ ସେ କୁଣ୍ଢାଇ ପକାଇଲେ ।

ପରଦିନ ସକାଳ । କଏଦୀଖାନାର ଜଗୁଆଳ ଦାସୀଟି ବ୍ରାହାମ୍‌ଗୋର୍‌ଙ୍କୁ ଦେଖି ଆଶ୍ଚର୍ଯ୍ୟ । ବିସ୍ମିତ । ସେ ରାଜାଙ୍କ ପାଖକୁ ପ୍ରାଣବିକଳରେ ଧାଇଁଗଲା । ଧଇଁସଇଁ ହୋଇ ଯାହା କହିଲା, ରାଜା ପ୍ରଥମେ ବୁଝିପାରିଲେ ନାହିଁ । ଯାହା ବୁଝିଲେ, ସେ ବିରକ୍ତ ହୋଇ ଉଠିଲେ । ନିଜେ ସତ କଥା ଜାଣିବାକୁ ଜେଲକୁ ଆସିଲେ । ସେଠି ରାଜକୁମାର ବ୍ରାହାମ୍‌ଗୋରଙ୍କୁ ଦେଖି ଖୁବ୍ ଖୁସି ହୋଇଗଲେ । ଜୀବନ ଧରି ସେ ଏଠାକୁ କେମିତି ଆସିଲେ ବୋଲି ପଚାରିଲେ । ତାଙ୍କଠାରୁ ସମସ୍ତ କଥା ଶୁଣିଲେ । ତାଙ୍କର ବିଶ୍ୱସ୍ତତା ଦେଖି ସେ ଭାରି ଖୁସି । ତାଙ୍କର ଭୂୟସୀ ପ୍ରଶଂସା କଲେ । ସାହାପସନ୍ଦଙ୍କୁ କହିଲେ "ତୋ ସ୍ୱାମୀ ତୋ ନିକଟକୁ ଆସିଛି । ମୋ କଥାନୁସାରେ ତୁ ତା ସହ ସଂସାର କର ।"

ତାପରେ ଯୁବରାଜଙ୍କୁ ସେ ତାଙ୍କର ଉତ୍ତରାଧିକାରୀ ବୋଲି ଘୋଷଣା କଲେ । ଯୁବରାଜ ବ୍ରାହାମ୍‌ଗୋର ରାଜକୁମାରୀ ସାହାପସନ୍ଦଙ୍କ ସହ ବହୁକାଳ ଇମାଲଡ଼ି ରାଜ୍ୟରେ ରହିଥିଲେ । ଶେଷ ପର୍ଯ୍ୟନ୍ତ ସେମାନଙ୍କ ସଂସାର ସୁଖମୟ ଥିଲା ।



## ଗୁଣବତୀ ଝିଅ

ଲୋକଟି ନିସ୍ୱ । ଅଳସୁଆ । କୋଢ଼ିଆ । ବାପମା ଭାଇ କିଏ କେହି ନାହାନ୍ତି । ତାର ସଂସାରମାନେ ସେ ନିଜେ । ସମ୍ପୂର୍ଣ୍ଣ ଏକାକୀ ।

ତା'ର ବୟସ ହୋଇଗଲା । ବାହା ହେବାକୁ ମନ ତା'ର ଉଚ୍ଛନ୍ନ । କିନ୍ତୁ ତା ଭଳିଆ ନିସ୍ୱ ଅପଦାର୍ଥକୁ କିଏ କାହିଁକି ଝିଅ

ଦେବାକୁ ରାଜି ହେବ ? ବୟସ ଗଡ଼ିବାକୁ ଆରମ୍ଭ କଲା । କିନ୍ତୁ ସେ ବାହା ହୋଇ ପାରିଲା ନାହିଁ ।

ସେ ଗାଁରେ ଗୋଟିଏ ବାଳକ ରହେ । ସେ ଖୁବ ଧୂର୍ତ୍ତ । କଥା କହିବାରେ ଓସ୍ତାଦ୍ । ସମସ୍ତଙ୍କ ମନ ମୋହି ପାରେ । ଉଦ୍‌ଯୋଗୀ କରିବା ତାର ବେଉସା । ସେ ଗାଁ କଣ ? ଆଖପାଖ ଗାଁର ବ ସବୁ ଅନ୍ଧ କୁଜା କଣା ଓ ଅପଦାର୍ଥଙ୍କୁ ବିବାହ କରାଇ ଦେଇଛି । ସେଥିପାଇ ତାର ଖୁବ ନାଁ । ଖାତିର । ଯାହାର ପୁଅଝିଅ ବାହା ନହୋଇ ପାରନ୍ତି, ତା ଦୁଆରେ ସେମାନଙ୍କର ଭିଡ଼ । ସେମାନଙ୍କୁ ସୁଫଳ ମିଳେ ।

ଆମ ନସ୍ୱ ଲୋକଟି ଏବେ ତାର ଦ୍ୱାରସ୍ଥ । ବାହା କରାଇ ଦେବାକୁ ତାର ମିନତି । ବାଳକ କହିଲା—"ତୁ କିଛି ଭଲ ପୋଷାକ ଧୋବାଘରୁ ଧାରରେ ଆଣ । ସୁନ୍ଦର ଆରବୀୟ ଘୋଡ଼ାଟିଏ ଯୋଗାଡ଼କର । ଉଜନେ କି ଦି ଉଜନ ବିଲୁଆଙ୍କୁ ପୋଷା ମନା । ଆମେ ତୋର ବାହାଘର କରାଇ ଦେବା । ସେ ପୁଣି ଗୋଟିଏ ରଜା ଝିଅ ସାଥିରେ ।" ଏକଥା ଶୁଣି ଲୋକଟି ଭାବିଲା—ଏହା ବାଳକର ଅଟା ଟାପରା ଓ ପରିହାସ । ତେଣୁ ସେ କହିଲା—'ଭାଇରେ ବାହାଘରଟିଏ ଜୁଟାଇ ଦେବାକୁ ମୁଁ ତୋ ପାଖକୁ ଆସିଛି । ତୁ ଏପରି ଥଟା ପରିହାସ କଲେ । ମୋର ଅବସ୍ଥା କ'ଣ ହେବ ?"

ବାଳକ କହିଲା—"ମୋ କଥା ମାନ । ମୁଁ ଯାହା କହିଲି ସେଇଆ କର । ଦେଖିବୁ । ବଢ଼ିଆ ଜାଗାରେ ବାହା ଘର କରିଦେବି ।"

ଲୋକଟି କଥା ମାନିଲା । ସେସବୁ ବ୍ୟବସ୍ଥା କରି ବାଳକ ପାଖକୁ ଆସିଲା । ସେସବୁଙ୍କୁ ଧରି ଲୋକଟି ବାଳକ ସାଥିରେ ବାହାରିଲା । ବହୁ ଦୂରରେ ଥିବା ଗୋଟିଏ ସହରର ଉପକଣ୍ଠରେ ସେମାନେ ପହଞ୍ଚିଲେ । ବାଳକ ଲୋକଟିକୁ ଗୋଟିଏ ବଡ଼ ଗଛ ମୂଳରେ ଅପେକ୍ଷା କରିବାକୁ କହିଲା । ତାପରେ ରାଜ ପ୍ରାସାଦକୁ ସେ ଦୌଡ଼ିଲା ।

ସେଠାକାର ରାଜାଙ୍କର ଗୋଟିଏ ବୋଲ ଝିଅ । ସେ ଅପୂର୍ବ ସୁନ୍ଦରୀ । ଗୁଣବତୀ । ବହୁ ରାଜା ତାକୁ ବୋହୂ କରିନେବାକୁ ଲାଳାୟିତ । ପ୍ରସ୍ତାବ ବି ପକାଇଛନ୍ତି । ରାଜା ଝିଅ ସେସବୁ ପ୍ରତ୍ୟାଖ୍ୟାନ କରିଛି । ତାର ଜିଦ୍ ଯେ ତାଠାରୁ ସୁନ୍ଦର ଓ ଗୁଣବାନ ହୋଇଥିବ, ତାକୁ ସେ ବିବାହ କରିବ । ମନଲାଖି ରାଜକୁମାରଟିଏ ରାଜା ଯୋଗାଡ଼ କରି ପାରିଲେ ନାହିଁ । ତେଣୁ ତାଙ୍କର ମନରେ ସବୁବେଳେ ଦୁଃଖ । ଅବଶୋଷ । ସେଥିପାଇ ସେ ବ୍ୟସ୍ତ ଓ ବିବ୍ରତ ।

ବାଳକଟି ରାଜାଙ୍କ ପାଖରେ ପହଞ୍ଚିଗଲା । ଅତି ଗୋପନୀୟ ଭାବରେ । ତାଙ୍କ କାନ ପାଖରେ ଫୁସ୍ ଫୁସ୍ କରି କହିଲା–'ମହାରାଜ, ଶୁଣିବା ମୁତାବକ ରାଜପୁତ୍ରଟିଏ ମିଳି ଯାଇଛି । କିନ୍ତୁ ରାଜପୁତ୍ରର ସର୍ତ୍ତ ଅଦ୍ଭୁତ । ଅନ୍ଧାର ହେଲେ ରାଜ କନ୍ୟା ଘୋଡାରେ ବସି ସହର ବାହାର ଶସ୍ୟ କ୍ଷେତରେ ପହଞ୍ଚିବେ । ଝିଅ ସାଥିରେ କେହି ଯିବେ ନାହିଁ । ରାଜ ପୁତ୍ରଙ୍କର ଧନ ଦୌଲତ ସବୁ ଅମାପ । ଯୌତୁକର ପ୍ରଶ୍ନ ଉଠୁ ନାହିଁ । ତାଙ୍କର କେବଳ ମନଲାଖି ରାଜକୁମାରୀ ଦରକାର । ସେ ତାଙ୍କୁ ନେଇଯିବେ ।"

କେଉଁ ଜାଗାରେ ରାଜା ବିବାହ ଠିକ୍ କରିପାରିନାହାନ୍ତି, ସେଥିପାଇଁ ସେ ନିଜକୁ ଅପରାଧୀ ମଣୁଥିଲେ । ତେଣୁ ସେ ଯେମିତି ଉତ୍ତମ ଓ ଗ୍ରହଣୀୟ ପ୍ରସ୍ତାବଟିଏ ପାଇଗଲେ, ସେ ଝିଅ ସାଥିରେ ପରାମର୍ଶ ବି କଲେ ନାହିଁ । ବାଳକକୁ ବିବାହ ପାଇଁ ଜବାବ ଦେଇଦେଲେ ।

ସେଇଦିନ ଅନ୍ଧାର ଯେମିତି ହୋଇଛି, ଛଦ୍ମ ବେଶୀ ରାଜ କୁମାର ଶସ୍ୟ କ୍ଷେତ ପାଖରେ ପହଞ୍ଚିଗଲା ।

ତାର ପରିଧାନ ପୋଷାକ ଅତ୍ୟନ୍ତ ଉତ୍ତମ । ମୂଲ୍ୟବାନ । ଆକର୍ଷଣୀୟ । ଘୋଡ଼ାଟି ଆରବୀୟ । ଅତ୍ୟନ୍ତ ସୁନ୍ଦର । ଖୁବ୍ ମୂଲ୍ୟବାନ । ଦୂର କ୍ଷେତରେ ବିଲୁଆମାନଙ୍କର ବୋବେଇବା ଭସି ଆସୁଥାଏ । ରାଜା ତ ବାଳକ କଥାରେ ପାଗଳ । ତେଣୁ ସନ୍ଦେହ

ତାଙ୍କ ବଗିଚାରେ ପ୍ରବେଶ କଲା ନାହିଁ । ଝିଅକୁ ସେ ବାରକସାଥିରେ ପଠାଇଦେଲେ । ବାରକ ରାଜାଙ୍କୁ କହିଲା—"ଆପଣଙ୍କ ଝିଅ ଆଉ ଆପଣଙ୍କ ପାଖକୁ ଫେରିବ ନାହିଁ । ଆପଣ ନିଜେ ଯଦି ଯିବେ । ଝିଅକୁ ଦେଖି ଆସିବେ ।

ଛଦ୍ମବେଶୀ ରାଜ କୁମାର ଯେଉଁଠି ଅପେକ୍ଷା କରିଥିଲା, ସେଠାରେ ଶବାରି ରହିଲା । ରାଜ କୁମାରୀ ଶବାରିରୁ ଓହ୍ଲାଇଲେ । ଘୋଡ଼ା ଓ ରାଜପୁତ୍ରର ପୋଷାକ ଦେଖି ରାଜକୁମାରୀ ବେଶ୍ ଖୁସି । ଅବିଶ୍ୱାସ ତାକୁ ସ୍ପର୍ଶ କଲାନାହିଁ । ସେ ରାଜପୁତ୍ର ସାଥିରେ ଘୋଡ଼ାରେ ବସିଲେ । ଛଦ୍ମବେଶୀ ରାଜକୁମାର ଘୋଡ଼ାକୁ ଝିପଟାଇ ଦେଲା । ଲୋକଟି ଘୋଡ଼ାରୁ ଘର ପାଖରେ ଓହ୍ଲାଇଲା । ରାଜକୁମାରୀ ଦେଖିଲା ସେ ଭଙ୍ଗା ଘର । ଘର ଭିତରେ ଭଙ୍ଗା ଖଟଟିଏ । ଏତିକ ହିଁ ସମ୍ବଳ । ରାଜକୁମାରୀ ଅନୁଭବ କଲା-ରାଜାଙ୍କର ନିଷ୍ପତ୍ତି ତ୍ରୁଟିପୂର୍ଣ୍ଣ । ସେ ଭୟଙ୍କର ଠକାମିର ଶିକାର । ସେ ପଳାଇଗଲେ ବିଦ୍ରୁପିତ ହେବ । ଲୋକ ଲଜ୍ଜା ବି ଅଛି । ରାଜ ସମ୍ମାନ ନଷ୍ଟ ହେବ । ସେ ଭାବିଲା—ଏହାକୁ ସଦୁପଯୋଗ କରିବାକୁ ହେବ । ନଚେତ ଧ୍ୱଂସ ଅନିବାର୍ଯ୍ୟ । ବୋହି ଆସୁଥିବା ଲୁହକୁ ସେ ପୋଛି ଦେଲା । ସ୍ୱାମୀକୁ ସେ କହିଲା—"ଯାହା ହବାର ଥିଲା ହୋଇଗଲା । ଆମକୁ ମୁଣ୍ଡ ଟେକି ଠିଆ ହେବାକୁ ହେବ ।

ସ୍ୱାମୀଟି ତା'ର ଏକ ଅପାରଗ ଅପଦାର୍ଥ, ଅଳସୁଆ, କୌଣସି କାମର ନୁହଁ । ଉପରେ ନିର୍ଭର କରି ଲାଭ ନାହିଁ । ତେଣୁ ସେ ତାକୁ କହିଲା—"ତୁମେ ଯାଅ । କେଉଁଠୁ ଲୁଞ୍ଚ ଓ ସୁତା ଧରିଆସ ।"

ସ୍ୱାମୀଟି ତ ବୋକା । ପଡ଼ିଶା ଘରୁ ଲୁଞ୍ଚ ସୁତା ମାଗି ଆଣିଲା । ନିଜ ଶାଢ଼ୀ ଚିରି ରାଜକୁମାରୀ କଣ୍ଢେଇ କଲେ । ସ୍ୱାମୀକୁ ବିକିବା ପାଇ ପଠାଇଲା । ମୋର କଣ୍ଢେଇ ଗୁଡ଼ିକ ଭାରି ସୁନ୍ଦର । ଲୋଭନୀୟ । ଲୋକଟିକୁ କିଛି କହିବାକୁ ପଡ଼ିଲା ନାହିଁ । ଶୀଘ୍ର ବିକି ହୋଇଗଲା ।

ରାଜକୁମାରୀ କିଛି କାଠି ସଂଗ୍ରହ କରି ମୟୁର କଲେ । ସେ ବି ବିକ୍ରି ହୋଇଗଲା । କିଛି ପଇସା ହୋଇଯିବାରୁ ରାଜକୁମାରୀ କାଠ ଓ ରଙ୍ଗ କିଣିଆଣିଲେ । ବଢ଼େଇ ଡାକି ଘୋଡ଼ାଟିଏ କରାଇଲେ ତା ତଳେ ଚକ ଲଗାଗଲା । ସେଥିରେ ରଙ୍ଗ ଲଗାଇଦିଆଗଲା । ଏହା ସହରର ଲୋକଙ୍କର ଖୁବ୍ ପସନ୍ଦ । ଦୋକାନୀମାନେ ଏପ୍ରକାର ଖେଳନାକୁ ବ୍ୟବସାୟ ପାଇଁ ଖୋଜିଲେ । ରାଜକୁମାରୀର ଏ ଧନ୍ଦା ହେଲା । ତାପରେ ବିଭିନ୍ନ ପ୍ରକାର ଖେଳନା ବି କରାଗଲା ।

ବ୍ୟବସାୟରେ ସାଫଲ୍ୟ ଆସିବାରୁ ସେମାନେ ଧନୀ ହୋଇଗଲେ । ସୁନ୍ଦର ରାଜମହଲ ତୋଲାଇଲେ । ଏହା ନିଜ ରାଜ ପ୍ରାସାଦଠାରୁ ବଡ଼ । ସୁନ୍ଦର ।

ଥରେ ରାଜକୁମାରୀ ଏକ ପ୍ରଦର୍ଶନୀର ଆୟୋଜନ କଲେ । ଦୂର ଦୂରାନ୍ତରୁ ଚିତ୍ରକାର, ଶିଳ୍ପୀ, କାରିଗର ଓ ସେମାନଙ୍କର ତିଆରି ଜିନିଷ ସବୁ ପ୍ରଦର୍ଶିତ ହୋଇଥିଲା । ନିଜର ବାପା ରାଜାଙ୍କୁ ବିଶେଷ ଅତିଥି ହିସାବରେ ଅଣାଯାଇଥିଲା ।

ରାଜକୁମାରୀ ପ୍ରଥମ ପୁରସ୍କାରର ବିଜେତା । ରାଜାଙ୍କଠାରୁ ତାହା ଗ୍ରହଣ କରିବାର କଥା । ରାଜା ଝିଅକୁ ଦେଖିଲେ । ଚିହ୍ନିଲେ । ବିବାହ ପାଇ ପଠାଇବା ପରେ ରାଜା ଝିଅ ବିଷୟରେ କିଛି ଜାଣିପାରିନଥିଲେ । ଏପରିକି ଚେଷ୍ଟା କରି ବି କିଛି ଖବର ସଂଗ୍ରହ କରିବା ତାଙ୍କ ପକ୍ଷରେ ଅସମ୍ଭବ ଥିଲା ।

ଝିଅକୁ ଦେଖି ରାଜା ଭାରି ଖୁସି । ଝିଅ ତାଙ୍କୁ ତାର ଘରକୁ ନେଇଗଲା । ସେଇଠାରେ ସମ୍ବର୍ଦ୍ଧନା କଲା ।

ବେକାର, ଅପଦାର୍ଥ, ଗଣ୍ଡମୂର୍ଖ, କୋଢ଼ିଆ ହାତରେ ମୋତେ ଟେକି ଦେଲେ । ମୁଁ ଚୁପ୍ ହୋଇ ବସିଥିଲେ କେଉଁକାଳୁ ଭୋକରେ ମରି ସାରନ୍ତିଣି । କିନ୍ତୁ ବୁଦ୍ଧି ପ୍ରୟୋଗ ଫଳରେ ମୁଁ ଏପରି ଅବସ୍ଥାକୁ ଆସିଛି । ଏହା ଥିଲା ରାଜାଙ୍କୁ ଝିଅର ବକ୍ତବ୍ୟ ।

ଏକଥା ଶୁଣି ରାଜା ନିଜର ତ୍ରୁଟି ପାଇଁ ଅନୁତାପ କଲେ ।

—୦—

# ପୃଥିବୀର ଲୋକକଥା

(୧) ତିଏତ ନାମ, (୨) ଲାଦାଖ-୧, (୩) ଲାଦାଖ-୨, (୪) ପଞ୍ଜାବ-୧
(୫) ପଞ୍ଜାବ-୨, (୬) ପଞ୍ଜାବ-୩, (୭) ପଞ୍ଜାବ-୪, (୮) ପଞ୍ଜାବ-୫,
(୯) ଉତ୍ତର ପ୍ରଦେଶ-୧, (୧୦) ଉତ୍ତରପ୍ରଦେଶ-୨, (୧୧) ପଞ୍ଜାବ-୬,
(୧୨) ଉତ୍ତର ପ୍ରଦେଶ-୩, (୧୩) ପଞ୍ଜାବ-୭, (୧୪) ଉତ୍ତର ପ୍ରଦେଶ-୪,
(୧୫) ମଧ୍ୟ ପ୍ରଦେଶ-୧, (୧୬) କାଶ୍ମୀର-୧, (୧୭) ଆସାମ-୧,
(୧୮) କାଶ୍ମୀର-୨, (୧୯) କାଶ୍ମୀର-୩, (୨୦) ଇହୁଦୀ-୧
(୨୧) ହିମାଚଳ ପ୍ରଦେଶ-୧, (୨୨) ଆସାମ-୨, (୨୩) ଶ୍ରୀଲଙ୍କା-୧,
(୨୪) ଋଷିଆ-୧, (୨୫) ଇହୁଦୀ-୨, (୨୬) ସାନ୍ତାଳ-୧ (୨୭) ଇଟାଲି-୧,
(୨୮) ମଧ୍ୟ ପ୍ରଦେଶ-୨, (୨୯) ଶ୍ରୀଲଙ୍କା-୨, (୩୦) ସାନ୍ତାଳ-୨,
(୩୧) ସାନ୍ତାଳ-୩, (୩୨) ସାନ୍ତାଳ-୪, (୩୩) ସାନ୍ତାଳ-୫),
(୩୪) ସାନ୍ତାଳ-୬, (୩୫) ସାନ୍ତାଳ-୭, (୩୬) ନେପାଳ-୧,
(୩୭) ହରିୟାନା-୧, (୩୮) ସାନ୍ତାଳ-୮, (୩୯) ସାନ୍ତାଳ-୯,
(୪୦) ସାନ୍ତାଳ-୧୦, (୪୧) ସାନ୍ତାଳ-୧୧, (୪୨) ସାନ୍ତାଳ-୧୨,
(୪୩) ସାନ୍ତାଳ-୧୩, (୪୪) ସାନ୍ତାଳ-୧୪, (୪୫) କନ୍ଧ-୧,
(୪୬) ନେପାଳ-୨ (୪୭) ତିବ୍ବତ-୧, (୪୮) ଇହୁଦୀ-୩,
(୪୯) ଇହୁଦୀ-୪, (୫୦) ଜାପାନ-୧ (୫୧) ତାମିଲ୍‌ନାଡୁ-୧,
(୫୨) ତାମିଲ୍‌ନାଡୁ-୨, (୫୩) ତାମିଲ୍‌ନାଡୁ-୩, (୫୪) ତିବ୍ବତ-୨.
(୫୫) ଫିଲିପାଇନ୍-୧, (୫୬) ଫିଲିପାଇନ୍-୨, (୫୭) ଚୀନ୍-୧,
(୫୮) ଫ୍ରାନ୍‌ସ-୧, (୫୯) ଫ୍ରାନ୍‌ସ-୨ (୬୦) ସ୍କଟ୍‌ଲ୍ୟାଣ୍ଡ-୧ ।

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**
**ପୋ.: ଦିଘାଳ, ଜିଲ୍ଲା : ପୁରୀ**
**ମହାନ୍ତିପଡ଼ା, କାଫଲା, କଟକ-୨**

**ପ୍ରାପ୍ତି ସ୍ଥାନ : ଗ୍ରନ୍ଥାଳୟ, ପଥିକ, ଭୁବନେଶ୍ୱର, ପଦ୍ମାଳୟା, ବାଦାମବାଡ଼ି,**
**କଟକ ଟ୍ରେଡିଂ କମ୍ପାନୀ, ବାଲୁବଜାର, କଟକ ।**